


ପ୍ରଣେତା

ସାର୍ ବାସୁଦେବ ସୁଢଳଦେବ

ପ୍ରଥମ ମୁଦ୍ରଣ
୧୯୫୭

ପ୍ରକାଶକ

ଲଲ୍ ଶ୍ରୀ ରବୀନ୍ଦ୍ରନାଥ ଦେବ

ଦେଓଗଡ଼, ବାମଣ୍ଡା

ମୂଲ୍ୟ ଦୁଇଟଙ୍କା ଆଠଅଣା

## —ବିଷୟ କ୍ରମ—



—*—

# ନିବେଦନ

ମୋର ପୂଜ୍ୟପାଦ ପିତାମହ ସ୍ୱନାମଧନ୍ୟ ସୁପଣ୍ଡିତ ସ୍ୱର୍ଗୀୟ ବାମଣ୍ଡାଧିପତି ସାର୍ ବାସୁଦେବ ସୁଡ଼ଳ ଦେବ କେ. ସି. ଆଇ. ଇ. ମହୋଦୟ ଓଡ଼ିଆ ଜାତିର ଅପରିଚିତ ନୁହନ୍ତି । ତାଙ୍କର ଜ୍ଞାନଗରିମା, ପାଣ୍ଡିତ୍ୟ, ଆଦର୍ଶପୂର୍ଣ୍ଣ ରାଜନୀତି, ଅର୍ଥନୀତି, ଜାତୀୟପ୍ରୀତି ଏବଂ ଓଡ଼ିଆ ସାହିତ୍ୟର ଉନ୍ନତି ତପସ୍ୟା ଅନନ୍ୟସାଧାରଣ, ଏହା ଦେଶର ସୁଧୀମଣ୍ଡଳୀ ତଥା ତତ୍କାଳୀନ ଉଚ୍ଚ ଶାସକ ବୃନ୍ଦ ମୁକ୍ତ କଣ୍ଠରେ ସ୍ୱୀକାର କରିଯାଇ ଅଛନ୍ତି । ମୁଁ ସେ ସବୁ ଏଠାରେ ଅବତାରଣା କରିବା ଆବଶ୍ୟକ ବୋଧ ନ କରି ଉକ୍ତ ମହୋଦୟଙ୍କର ଲୁପ୍ତପ୍ରାୟ ସାହିତ୍ୟିକ ପ୍ରତିଭା ଦେଶବାସୀ ପ୍ରିୟ ଭାଇ ଭଉଣୀମାନଙ୍କ ଆଗରେ ପରିବେଷଣ କରିବାକୁ ମୋର କ୍ଷୁଦ୍ର ଶକ୍ତି ନିୟୋଜିତ କରିଅଛି ।

ପ୍ରାଚୀନ ଭଞ୍ଜଯୁଗର ଭାଷା ସାହିତ୍ୟ ପରେ ଯେଉଁ ନୂତନ ଓଡ଼ିଆ ସାହିତ୍ୟର ସୃଷ୍ଟି ହୁଏ, ଯାହା କି ବର୍ତ୍ତମାନ ରାଧାନାଥ ଯୁଗ ସାହିତ୍ୟରୂପେ ଅଭିହିତ, ସେ ଯୁଗର ପ୍ରଧାନ ଆବାହକ ଥିଲେ ରାଜା ସାର୍ ବାସୁଦେବ ସୁଡ଼ଳ ଦେବ । ମାତୃ ଭାଷାରେ ପ୍ରାଞ୍ଜଳ ଏବଂ ନିର୍ଦ୍ଦୋଷ ସାହିତ୍ୟ ସୃଷ୍ଟିର ଅଭାବ ଏବଂ ଅସୁବିଧା ଉପଲବ୍ଧି କରି ସେ ପ୍ରଥମେ ଓଡ଼ିଆ ଭାଷାରେ "ଅଳଂକାର ବୋଧୋଦୟ" ଗ୍ରନ୍ଥ ଲେଖି ପ୍ରକାଶ କରନ୍ତି । ତତ୍ପରେ "ଶବ୍ଦୋଦ୍ଭଳା" ବର୍ଣ୍ଣନାତ୍ମକ କାବ୍ୟ, ଐତିହାସିକ "ବୀରବାମା", ପୌରାଣିକ "ଋକ୍ମିଣୀ" ଲେଖି କାବ୍ୟରେ ଅଳଂକାରମାନ ସନ୍ନିବେଶିତ କଲେ ସାହିତ୍ୟ କିପରି ସରସ ସୁନ୍ଦର ହୋଇ ଉଠେ ତାହାର ଆଦର୍ଶ ଦେଖାଇ ଦେଇ ଅଛନ୍ତି । କେଉଁ କେଉଁ ଦୋଷ ତ୍ରୁଟି ରହିଲେ କାବ୍ୟ କବିତା ଦୁଷ୍ଟ ହୁଏ ଅଳଂକାର ବୋଧୋଦୟରେ ତାହାର ନିର୍ଦ୍ଦେଶ ଦେଇ ଅଛନ୍ତି । ଉକ୍ତ ପ୍ରତିଭାଶାଳୀ ରାଜା ମହୋଦୟ ନିଜର କର୍ମମୟ ଜୀବନରେ ମାତୃଭାଷାର ଉନ୍ନତି କଳ୍ପେ ଯେଉଁସବୁ କାବ୍ୟ କବିତା ଲେଖି ଯାଇଅଛନ୍ତି କ୍ରମେ ସେ ସବୁ ଦେଶବାସୀଙ୍କର ଅଗୋଚରୀଭୂତ ହେଉଥିବାର ଅନୁଭବ କରି, ବହୁ ଆୟାସରେ ଲୁପ୍ତ କବିତାଗୁଡିକ ସଂଗ୍ରହପୂର୍ବକ "ବାସୁଦେବ ଗ୍ରନ୍ଥାବଳୀ"

ଆକାରରେ ପ୍ରକାଶ କରି ଦେଶବାସୀଙ୍କ ହସ୍ତରେ ଅର୍ପଣ କଲି । ବହୁ ଚେଷ୍ଟା ଏବଂ ଅନୁସନ୍ଧାନ ସତ୍ତ୍ୱେ କବିଙ୍କ ରଚିତ "କଣ୍ଠି କ୍ରିୟା" କାବ୍ୟ ନ ମିଳିବା ହେତୁ ଗ୍ରନ୍ଥାବଳୀସ୍ଥ କରି ନ ପାରି ମର୍ମ୍ମବେଦନା ସହିବାକୁ ପଡ଼ୁଛି ।

ଅବହେଳିତ ଆମ ଓଡ଼ିଶାରେ ବହୁ ବିଳମ୍ବରେ ପ୍ରତିଭାପୂଜା ଆରମ୍ଭ ହୋଇଥିଲେ ମଧ୍ୟ ଏପର୍ଯ୍ୟନ୍ତ ବାସୁଦେବ ସୁଢଳଦେବଙ୍କର ପ୍ରତିଭା ଏ ଜାତି ଉପଲବ୍ଧି କରିନାହିଁ । କିନ୍ତୁ ଉକ୍ତ ବିମଳଯଶା ନରପତିଙ୍କର ମନସ୍ୱିତା ଓ ବ୍ୟକ୍ତିତ୍ୱର ପରିଚୟ ପାଇ ପ୍ରତିବେଶୀ ବଙ୍ଗଭାଷୀଗଣ ଉତ୍କଳ ତଥା ଭାରତର ବିଭିନ୍ନାଞ୍ଚଳରୁ ତାଙ୍କର ମୂଲ୍ୟବାନ ଜୀବନର କାର୍ଯ୍ୟାବଳୀ ସଂଗ୍ରହ ପୂର୍ବକ ସ୍ୱଭାଷାରେ ପ୍ରାୟ ଦୁଇଶତ ପୃଷ୍ଠା ବିଶିଷ୍ଟ ଯେଉଁ ବୃହତ୍ 'ବାସୁଦେବଜୀବନୀ'ଗତ ତିରିଶବର୍ଷ ପୂର୍ବେ ପ୍ରକାଶ କରିଅଛନ୍ତି, ତାହା ପାଠ କଲେ ବାସୁଦେବ ସୁଢଳଦେବ ଦୁଇହଜାର ବର୍ଗମାଇଲ ଘୋଟିଏ ଅନ୍ଧାରି ରାଜ୍ୟରେ ବୈଦେଶିକ ଶାସନର କର୍ତ୍ତୃତ୍ୱରେ ରାଜା ଥାଇ ଦେଶ ତଥା ସମାଜରେ ସ୍ୱ ପ୍ରତିଭା ଓ ସ୍ୱଦେଶହିତୈଷିତାର କିପରି ଆଲୋକପାତ କରିଥିଲେ ପରିଷ୍କାର ଜଣାପଡ଼େ । ତେଣୁ ଏ ଉଦ୍ୟମର ଅବତାରଣା ।

ଏହି ଗ୍ରନ୍ଥ ପ୍ରକାଶନ ସମ୍ପର୍କରେ ମୋତେ ବାମଣ୍ଡାର ରାଜା ଶ୍ରୀମାନ୍ ଭାନୁଗଙ୍ଗ ତ୍ରିଭୁବନ ଦେବ ମହୋଦୟ ସମଧିକ ଉତ୍ସାହ ତଥା ମହନୀୟ ପ୍ରଣୋଦନ ଦେଇ ସମୁତ୍ସାହିତ କରିଥିବାରୁ ଏବଂ ସମ୍ପୂର୍ଣ୍ଣ ରୂପେ ସହାୟତା କରିଥିବାରୁ ମୁଁ ଉକ୍ତ ଉଚ୍ଚ-ହୃଦୟ ରାଜା ସାହେବଙ୍କ ନିକଟରେ ଚିର କୃତଜ୍ଞ ହୋଇଅଛି ।

ବର୍ତ୍ତମାନ ଯୁଗରେ ପ୍ରତ୍ୟେକ କର୍ମ ଆରମ୍ଭରେ ମଧ୍ୟବିତ୍ତ ଲୋକଙ୍କ ପକ୍ଷରେ ଅର୍ଥ ସମସ୍ୟା ବଡ଼ ଜଟିଳ ହୋଇ ଉଠିଛି । ମୁଁ ଏହି ଜଟିଳ ପରିସ୍ଥିତିରେ ପଡ଼ି ପ୍ରଥମେ ହତୋତ୍ସାହ ହୋଇଥିଲି; ମାତ୍ର ପରବର୍ତ୍ତୀ ପୃଷ୍ଠାଙ୍କିତ ସହୃଦୟାତ୍ମା ମହାନୁଭବଗଣ ଉକ୍ତ ପୃଷ୍ଠାଙ୍କିତ ଅର୍ଥ ସାହାଯ୍ୟ ପଠାଇ ମୋର ଏହି ଉଦ୍ୟମକୁ ସାଫଲ୍ୟମଣ୍ଡିତ କରିଅଛନ୍ତି । ଏଣୁ ମୁଁ ସେମାନଙ୍କ ନିକଟରେ ମଧ୍ୟ ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

ଗ୍ରନ୍ଥାବଳୀ ପ୍ରକାଶ ବିଷୟକ ଅନ୍ୟାନ୍ୟ ଆବଶ୍ୟକ କର୍ମରେ ସ୍ଥାନୀୟ ୰ ବୃନ୍ଦାବନ ନାଥ ଶର୍ମା, ପ୍ରାଜ୍ଞ ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀ,

ପ୍ରାଜ୍ଞ ଶ୍ରୀଯୁକ୍ତ ମଦନମୋହନ ଗୁରୁ, ସୁପଣ୍ଡିତ ଶ୍ରୀଯୁକ୍ତ ନୀଳକଣ୍ଠ ମିଶ୍ର ଶାସ୍ତ୍ରୀ ଓ ଶ୍ରୀଯୁକ୍ତ ଲାଲ ରାଜକିଶୋର ଦେବ ଅନେକ ସହାୟତା କରି ଅଛନ୍ତି ଏବଂ ମହାସ୍ର ଅବରଜ ଜମିଦାର ଶ୍ରୀଯୁକ୍ତ ବୀରେନ୍ଦ୍ରନାଥ ସିଂହ ବି. ଏ. ଗ୍ରନ୍ଥ ରଚୟିତାଙ୍କ ସଂକ୍ଷିପ୍ତ ଜୀବନୀ ଲିଖନରେ ଶ୍ରମ ସ୍ୱୀକାର କରି ଅଛନ୍ତି । ଏମାନଙ୍କ ଦ୍ୱାରା ମୁଁ ବିଶେଷ ଉପକୃତ ହୋଇ ହାର୍ଦ୍ଦିକ ଧନ୍ୟବାଦ ଅର୍ପଣ କରୁଅଛି ।

ଆହୁରି ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା, ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଡକ୍ଟର ମାୟାଧର ମାନସିଂହ, ଅଧ୍ୟାପକ ଶ୍ରୀଯୁକ୍ତ ଜୟକୃଷ୍ଣ ମିଶ୍ର ଓ ଅଧ୍ୟାପକ ଶ୍ରୀଯୁକ୍ତ ଗୌରୀକୁମାର ବ୍ରହ୍ମା ବହୁ ଶ୍ରମସ୍ୱୀକାର ପୂର୍ବକ ଗ୍ରନ୍ଥାବଳୀର ଭୂମିକା, ମୁଖବନ୍ଧାଦି ଲେଖି ଦେଇଥିବାରୁ ସେମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଅଛି ।

| | |
|---|---|
| ଦେବଗଡ଼ (ବାମଣ୍ଡା) | ବିନୀତ |
| ତା ୯ । ୭ । ୧୯୫୭ | ଲାଲ ରବୀନ୍ଦ୍ରନାଥ ଦେବ |



# ସାହାଯ୍ୟ ବିବରଣ

୧ । ଶ୍ରୀମତୀ ସୁରତରଙ୍ଗିଣୀ ଦେବୀ
ମହାରାଜମାତା, କଳାହାଣ୍ଡି — ଟ ୩୦୦୲

୨ । ଶ୍ରୀମତୀ ପ୍ରେମମଞ୍ଜରୀ ଦେବୀ
ମହାରାଣୀ ସାହେବା, ଛୋଟ ନାଗପୁର (ରାଞ୍ଚି) — ଟ ୨୦୦୲

୩ । ଲଲ ଜୟନାରାୟଣ ଦେବ, ଦେବଗଡ଼ — ଟ ୨୦୦୲

୪ । ଶ୍ରୀମତୀ ରାଜସୁନ୍ଦରୀ ଦେବୀ
ରାଣୀ ସାହେବା, ଦଶପଲ୍ଲା — ଟ ୧୦୦୲

୫ । ଶ୍ରୀମତୀ ଚନ୍ଦ୍ରୋତ୍ପଳା ଦେବୀ
ରାଣୀ ସାହେବା, ଟିକାଲି (ଗଞ୍ଜାମ) — ଟ ୧୦୦୲

୬ । ଶ୍ରୀମତୀ ସରୋଜନୀ ଦେବୀ
ଲଲୁଆଣୀ ସାହେବା, ପଞ୍ଚକୁଟ, କାଶିପୁର(ମାନଭୂମ୍) — ଟ ୫୦୲

୭ । ଶ୍ରୀମତୀ କୁମୁଦବତୀ ଦେବୀ
ଲଲୁଆଣୀ ସାହେବା, ପଞ୍ଚକୁଟ, କାଶିପୁର (ମାନଭୂମ୍) — ଟ ୨୦୲

୮ । ଶ୍ରୀମତୀ ମୃଣାଳିନୀ ଦେବୀ
କୁଆଁରୁଣୀ ସାହେବା, ଖରସୁଆଁ, ସିଂହଭୂମ୍ — ଟ ୨୫୲

୯ । ଶ୍ରୀମତୀ ଶାନ୍ତଲତା ଦେବୀ
କୁଆଁରୁଣୀ ସାହେବା (ମାନଭୂମ) — ଟ ୨୧୲

୧୦ । ଶ୍ରୀମତୀ ବୀଣାପାଣି ଦେବୀ,
ରାଣୀ ସାହେବା, କଳାହାଣ୍ଡି, କାଶିପୁର··· — ଟ ୨୦୲

୧୧ । ଶ୍ରୀମତୀ ହେମଲତା ଦେବୀ
ଜମିଦାର ସାହେବାଣୀ, ହିଜଲକାଠ୍ — ଟ ୧୦୲

୧୨ । ଶ୍ରୀମତୀ ଅକ୍ଷୟକୁମାରୀ ଦେବୀ
ଲଲୁଆଣୀ ସାହେବା, ମୟୂରଭଞ୍ଜ — ଟ ୧୧୲

୧୩ । ଶ୍ରୀମତୀ ସ୍ନେହଲତା ଦେବୀ
ପଟ୍ଟେଇଣୀ ସାହେବା, ତାଳଚେର — ଟ ୧୫୲

୧୪ । ଶ୍ରୀମତୀ ମାନସମୋହିନୀ ଦେବୀ
ରାଣୀ ସାହେବା, କାତରାସ୍ — ଟ ୩୧୲

୧୫ । ଶ୍ରୀଯୁକ୍ତ ରାଜା ସାହେବ, ତାଳଚେର — ଟ ୫୦୲

---

# ଭୂମିକା

ବାମଣ୍ଡାର ରାଜା ସାହେବ ଓ ବଡ଼କୁମାର ସାହେବ ମୋତେ ସ୍ୱର୍ଗୀୟ ରାଜା ସାର୍ ସୁଚଳ ଦେବଙ୍କ ଗ୍ରନ୍ଥାବଳୀର ଭୂମିକା ଲେଖିବାକୁ ଅନୁରୋଧ କରିଥିବାରୁ ମୁଁ ନିଜକୁ ସମ୍ମାନିତ ମନେ କରୁଅଛି । ସୁଚଳଦେବ ଜଣେ ମହାପୁରୁଷ ଥିଲେ । ମହାପୁରୁଷମାନଙ୍କର ଗୋଟିଏ ଲକ୍ଷଣ ହେଉ-ଅଛି ଯେ ସେମାନେ ନିଜର ଦୂରଦୃଷ୍ଟିଦ୍ୱାରା ନିଜର ସମସାମୟିକ ଅବସ୍ଥାରୁ ଆଗକୁ ଯିବାକୁ ଚେଷ୍ଟା କରିଥାନ୍ତି । ତହିଁରେ ଘାତ ପ୍ରତିଘାତ ଓ ପ୍ରତିବନ୍ଧକ ସତ୍ତ୍ୱ ମଧ୍ୟ ନିଜର ବେଷ୍ଟନୀର ପ୍ରଗତି ଦିଗରେ ପରିବର୍ତ୍ତନ କରିବାକୁ ଚେଷ୍ଟା କରନ୍ତି ଏବଂ କୃତକାର୍ଯ୍ୟ ମଧ୍ୟ ହୋଇଥାନ୍ତି । ଅତଏବ କୌଣସି ମହାପୁରୁଷଙ୍କର ମହତ୍ତ୍ୱ ଉପଲବ୍ଧି କରିବାକୁ ହେଲେ, ତାଙ୍କର ସମସାମୟିକ ପରିସ୍ଥିତି ଓ ବେଷ୍ଟନୀ ପରୀକ୍ଷା କରିବାକୁ ହେବ । ସୁଚଳ-ଦେବଙ୍କ ସମୟରେ ଗମନାଗମନର ସୁବିଧା ପାଇଁ ରେଲପଥ ନଥିଲା । ତାଙ୍କ ରାଜ୍ୟର ଚାରିଆଡ଼େ ମଧ୍ୟଯୁଗପନ୍ଥୀ ଦେଶୀୟ ରାଜ୍ୟ । ଏପରି ପରିସ୍ଥିତରେ ସୁଚଳଦେବ ନିଜ ରାଜ୍ୟର ଉନ୍ନତି କଲେ, ଯେଉଁ ଯେଉଁ ପ୍ରଗତିଶୀଳ ଲୋକହିତକର କାର୍ଯ୍ୟମାନ କରି ଯାଇଥିଲେ ତାହା ତାଙ୍କର ମହତ୍ତ୍ୱର ପରିଚୟକ । ବହୁ କ୍ଳେଶ ସହ୍ୟ କରି ଭାରତର ନାନା ସ୍ଥାନ ଭ୍ରମଣ କରି ସବୁବେଳେ ନିଜ ରାଜ୍ୟର କିପରି ଉନ୍ନତି କରିବେ ସେହି ଚିନ୍ତା ତାଙ୍କ ମନରେ ପ୍ରଥମ ସ୍ଥାନ ଅଧିକାର କରୁଥିଲା । ତାଙ୍କ କଥା ଭାବିଲେ ରୁଷିଆର ରାଜା ପିଟରଙ୍କ କଥା ମନେ ପଡ଼େ । ପିଟର ଯେପରି ପାଶ୍ଚାତ୍ୟ ଉନ୍ନତଶୀଳ ଦେଶମାନଙ୍କୁ ଯାଇ ନିଜେ ଖଟି ଯାହା ଶିଖିଥିଲେ ସେ ଜ୍ଞାନକୁ ନିଜ ରାଜ୍ୟର ଉନ୍ନତିପାଇଁ ଖଟାଇ ଥିଲେ, ବାସ୍ତବରେ ସୁଚଳଦେବ ସେହିପରି ନାନା ସ୍ଥାନ ଭ୍ରମଣ କରି ଯାହା ଭଲ ଦେଖୁଥିଲେ ତାହା କିପରି ତାଙ୍କ ରାଜ୍ୟର ଉନ୍ନତି କଲେ ବ୍ୟବହୃତ ହୋଇ ପାରିବ ତାହାହିଁ ଭାବୁଥିଲେ । ସେଥିପାଇଁ ତାଙ୍କୁ ସମସ୍ତେ ଆଦର୍ଶ ଶାସକ ବୋଲି ମନେ କରୁଥିଲେ । ଏପରିକି ପଚାଶ ବର୍ଷରୁ ଅଧିକ କାଳ ଆଗରୁ ସେ ଆଦର୍ଶ ଶାସକ, ବିଦ୍ୟାର ପୃଷ୍ଠପୋଷକ ଓ ମହତ୍‌ମାନବ ବୋଲି ଓଡ଼ିଶାରେ ଖ୍ୟାତି ଲଭିଥିଲେ । ସେ ଯେତେବେଳେ ୧୯୦୩ ସାଲରେ ଇହଲୀଳା

ସମ୍ବରଣ କଲେ, ଭକ୍ତ କବି ମଧୁସୂଦନ ତାଙ୍କ ବିଷୟରେ ଯାହା ଲେଖି-ଥିଲେ ତାହା ତାଙ୍କ ବହୁମୁଖୀ ମହତ୍ତ୍ୱର ପରିମାପକ ବୋଲି ଧରିବାକୁ ହେବ । ଭକ୍ତ କବିଙ୍କ ଲେଖାରୁ ଗୋଟିଏ ମାତ୍ର ଶ୍ଲୋକ ଉଦ୍ଧାର କରିବା । ସେ ଲେଖିଥିଲେ—

ସତେ କି ହେ ମହାରାଜ ! ଗଙ୍ଗବଂଶ-ରବି
କୋଟିନେତ୍ର-ନନ୍ଦନ-ପ୍ରତିମା
ବୁଧକୁଳ ମାନମାପ୍ୟୁ ମନୀଷୀ ସୁକବି
ସ୍ୱଦେଶର ଗୌରବ ଗରିମା ।

ସତେ କି ହେ ପୁଣ୍ୟଶ୍ଲୋକ ପରଲୋକ ଦେଶେ
ମହା ପ୍ରସ୍ଥାନର ମହାପଥେ
ଗଲ ଗୁଳି ଏ ସଂସାର ଚେତନ ନିମିଷେ
ସୁକୃତ-ପୁଷ୍ପକ ପୁଣ୍ୟରଥେ ।

ଶାସକ ଓ ବିଦ୍ୟାର ପୃଷ୍ଠପୋଷକ ହିସାବରେ ରାଜା ସ୍ତୁତଲ ଦେବଙ୍କର ଖ୍ୟାତି ଏତେ ବେଶୀ ଥିଲା ଯେ ତାଙ୍କର କବିତ୍ୱ ଓ ସାହିତ୍ୟିକତ୍ୱ ଘୋଡ଼ି ହୋଇ ପଡ଼ିଥିଲା । କେବଳ ତାଙ୍କର ଘନିଷ୍ଠ ବନ୍ଧୁ ସାହିତ୍ୟିକମାନଙ୍କୁ ତାଙ୍କ ଚରିତ୍ରର ଏ ଦିଗ ଜଣା ଥିଲା । ଭକ୍ତକବି ତେଣୁ ତାଙ୍କୁ ସୁକବି ବୋଲି ବର୍ଣ୍ଣନା କରିଅଛନ୍ତି । ବାମଣ୍ଡାର ବର୍ତ୍ତମାନ ରାଜା ଭାନୁଗଙ୍ଗ ଦେବ ସ୍ୱର୍ଗୀୟ ସୁଢଳ ଦେବଙ୍କ ଜୀବନୀ ଓ ଗ୍ରନ୍ଥମାଳା ପ୍ରକାଶ କରାଇ ଅଧୁନାତନ ନୃପତିମାନଙ୍କ ଆଗରେ ଗୋଟିଏ ଆଦର୍ଶ ଥୋଇଥିବାରୁ ଧନ୍ୟବାଦାର୍ହ ହୋଇଅଛନ୍ତି । ସୁତଳଦେବଙ୍କ କାବ୍ୟ-ମଧ୍ୟରେ "ବୀର-ବାମା" (ଝାନ୍ସୀର ରାଣୀ) ଓ "ଶବୋଦ୍ଧାରା" ପ୍ରଧାନ । ଝାନ୍ସୀରାଣୀଙ୍କର ବୀରତ୍ୱ ଓ ସ୍ୱାଧୀନତା-ସଂଗ୍ରାମ ସ୍ୱଦେଶପ୍ରେମୀ ସୁତଳ-ଦେବଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ତେଣୁ ସେ "ବୀରବାମା" କାବ୍ୟ ରଚନା କରିଥିଲେ । ସେ କାବ୍ୟର ଗୁଣ ଆଲୋଚନା କରିବାର କ୍ଷମତା ମୋର ନାହିଁ, ତେବେ ଏତିକି ବୁଝାଯାଇପାରେ ଯେ ଏହି ରଚନାରୁ ସୁଢଳ-ଦେବଙ୍କ ସ୍ୱଦେଶପ୍ରେମର ଯଥେଷ୍ଟ ଆଭାସ ମିଳେ ।

ପ୍ରବଚନ ଅଛି ଯେ ଅବସ୍ଥା ଯେତେ ଖରାପ ହେଉ ପଛକେ, ସେଥିରେ କିଛି ନା କିଛି ଭଲଗୁଣର ଆଭାସ ଥାଏ । ପୂର୍ବେ ବୁଝାଯାଇ

ଅଛି ଯେ ସୃଷ୍ଟିଧରଦେବଙ୍କ ସମୟରେ ଗମନାଗମନର ପଥ ସୁଗମ ନଥିଲା । ସେତେବେଳେ ବାମଣ୍ଡାରୁ କଟକ ଆସିବାକୁ ହେଲେ ସମ୍ବଲପୁର ଆସି ନୌକା ଯୋଗେ ମହାନଦୀ ବାଟେ କଟକ ଆସିବାକୁ ପଡୁଥିଲା । ଏ ପଥ ସମଯୁଷ୍ଟ ଥିଲେ ମଧ୍ୟ ବଡ଼ ରମ୍ୟ । ଯେଉଁମାନେ ଏ ପଥରେ ଯାଇଛନ୍ତି ସେମାନେ ଏହାର ବୈଚିତ୍ର୍ୟ ଉପଲବ୍ଧି କରିଥିବେ । ସୃଷ୍ଟିଧରଦେବ ଏ ପଥରେ ଆସିବାବେଳେ ମହାନଦୀର ରମଣୀୟ ଉପତ୍ୟକା ତାଙ୍କର କବି ହୃଦୟକୁ ସ୍ପର୍ଶ କରିଥିଲା । ଫଳରେ ସେ ତରଙ୍ଗିଣୀ କାବ୍ୟ ରଚନା କରିଥିଲେ । ସେ ମହାନଦୀ ବାଟେ କଟକ ନଆସିଥିଲେ ତରଙ୍ଗିଣୀ କାବ୍ୟ ରଚନା ସମ୍ଭବ ହୋଇଥାନ୍ତା କି ନାହିଁ ସନ୍ଦେହ । ସେ ଯଦି ମୋଟର ଯୋଗେ ଘଣ୍ଟାକୁ ୪୦ ମାଇଲ ବେଗରେ କଟକ ଆସିଥାନ୍ତେ, ସୌନ୍ଦର୍ଯ୍ୟ ଅନୁଭବ କରିବାର ଅବକାଶ ପାଆନ୍ତେ କେଉଁଠୁ । ତେଣୁ କହନ୍ତି କଳାମେଘରେ ମଧ୍ୟ ବିଜୁଳିର ସୌନ୍ଦର୍ଯ୍ୟ ଥାଏ ।

ତରଙ୍ଗିଣୀ କାବ୍ୟ ସରସ ଏବଂ ପ୍ରକୃତି ବର୍ଣ୍ଣନା ଚିତ୍ତାକର୍ଷକ । ଟିକିଏ ଶବ୍ଦକାଠିନ୍ୟ ଦୋଷ ନ ଥିଲେ ସାଧାରଣ ପାଠକର ଆହୁରି ମନମୋହକ ହୋଇଥାନ୍ତା । ତାଙ୍କର ପ୍ରକୃତି-ଦର୍ଶନ-ନିପୁଣତା ଓ ଉପମାଗୌରବ ପ୍ରତିପଦରେ ଫୁଟିଅଛି । ଉଦାହରଣ ଦେବାକୁ ହେଲେ ବହୁତ ଦେଇ ହେବ । ଗୋଟିଏ ଉଦାହରଣ ଦେଇ କ୍ଷାନ୍ତ ହେବା ।

ମୃତ୍ତିକା-ଚର୍ଚ୍ଚିତ କଳେବର ପ୍ରାୟେ
ଭାସୁଛନ୍ତି ଫେନାବଳୀ,
ନୃଶଂସ ହରିଣ ଉଦରେ ପୂରାଇ
ଆସୁଛନ୍ତି ଢଳି ଢଳି ।
ଆବର୍ତ୍ତ ଭ୍ରମଣ- ସଫେନ ଘନୋର୍ମି-
ପ୍ରବାହ ଗର୍ବରେ ମାତି,
ଉତ୍ତରଙ୍ଗ ହୋଇ ଉଛୁଳି ପଡ଼ୁଛି
ଉଲସି ଉଠଇ ଛାତି ।
ଈଶ୍ୱର ପ୍ରଦତ୍ତ ଅବିଶ୍ରାନ୍ତ ସୁଖ-
ସମ୍ଭୋଗେ ହୋଇ ଅବଶ,
ଲହରୀ ଦୋଳରେ ବସି ଖେଳୁଅଛି
ସୁପ୍ରେମୀ ମାନସ-ହଂସ ।

ଏହି କେତୋଟି ପଂକ୍ତିରୁ କବିଙ୍କ ନିଜ ପ୍ରକୃତି-ପ୍ରେମିକତ୍ୱର ପ୍ରମାଣ ମିଳୁଅଛି ।

ତାଙ୍କ ପାଣ୍ଡିତ୍ୟର ନିଦର୍ଶନ ତାଙ୍କର "ଅଳଙ୍କାର ବୋଧୋଦୟ ।" ଏହି ରଚନାରୁ ସୁଡଳଦେବଙ୍କର ଓଡ଼ିଆ ଓ ସଂସ୍କୃତରେ ପାଣ୍ଡିତ୍ୟର ପ୍ରମାଣ ମିଳେ ।

ପ୍ରକାଶକ ମହାଶୟ ସୁଡଳଦେବଙ୍କ ଜୀବନୀ ଓ ତାଙ୍କର ଲେଖାବଳୀ ପ୍ରକାଶ କରି ଗୋଟିଏ ମହତ୍ କାର୍ଯ୍ୟ କରିଛନ୍ତି । ସୁଡଳଦେବଙ୍କ ଖ୍ୟାତି ଏକ ସମୟରେ ଅନେକଙ୍କୁ ପ୍ରେରଣା ଦେଉଥିଲି । ତାଙ୍କର ଜୀବନୀ ଓ ଲେଖାବଳୀ ପୁଣି ଉତ୍କଳୀୟଙ୍କୁ କର୍ତ୍ତବ୍ୟନିଷ୍ଠା, ଧର୍ମପ୍ରାଣତା ଓ ପାଣ୍ଡିତ୍ୟ ପଥରେ ପ୍ରେରଣା ଦେଉ ଏହାହିଁ କାମନା ।

କଟକ
୧୮ । ୪ । ୫୬

ପ୍ରାଣକୃଷ୍ଣ ଛତରା

# ନରୋତ୍ତମ ସୁଢଳଦେବ

ସୁଢଳ ଗ୍ରନ୍ଥାବଳୀର ଏକ ଭୂମିକା ଲେଖିଦେବା ପାଇଁ ଅନୁରୁଦ୍ଧ ହୋଇ ମୁଁ ବାମଣ୍ଡାର ବର୍ତ୍ତମାନ ରାଜା ଶ୍ରୀ ଭାନୁଗଙ୍ଗ ଦେବଙ୍କ ନିକଟରେ କୃତଜ୍ଞ ଅନୁଭବ କରୁଛି । କାରଣ ସର୍ ସୁଢଳଦେବଙ୍କ ପରି ଅଲୌକିକ ପ୍ରତିଭା-ବାନ୍ ନରୋତ୍ତମଙ୍କର ଜୀବନୀ ଓ ଚରିତ୍ର ଆଲୋଚନା କଲେ କିଛି ନା କିଛି ଶିକ୍ଷା ନ ପାଇବ ଏପରି ଲୋକ ଥିବା ସନ୍ଦେହ— ବିଶେଷତଃ ଓଡ଼ିଶାରେ । ସୁଢଳଦେବ ରାଜବଂଶରେ ଜାତ ହେବା ଦ୍ୱାରା ଓଡ଼ିଶା ଓ ଓଡ଼ିଆ ଜାତି ବିଶେଷ କ୍ଷତିଗ୍ରସ୍ତ ହୋଇଛି ବୋଲି ମୁଁ ମନେକରେ । ଦୁଇଶବର୍ଷ ତଳେ ଜନ୍ମ ହୋଇଥିଲେ ତାଙ୍କ ନାମ ଖାରବେଳ, କପିଳେନ୍ଦ୍ରଙ୍କ ସହିତ ଯେ କୋଟି ମୁଖରେ ଗର୍ବର ସହିତ ସମୋଚ୍ଚାରିତ ହେଉଥାନ୍ତା ଏଥିରେ ସନ୍ଦେହ ନାହିଁ । କାରଣ ସେ ବୁଦ୍ଧିର ପ୍ରାଖର୍ଯ୍ୟ, ବହୁମୁଖିତା ଓ ଅସରନ୍ତି କର୍ମଶକ୍ତିରେ କେବଳ ଉତ୍କଳର ନୁହେଁ ପୃଥିବୀର ଇତିହାସରେ ଖ୍ୟାତନାମା, ବୁଦ୍ଧିମାନ୍, ବିଜୟୀ, ସୁଶାସକ ମାନଙ୍କ ସମଧର୍ମୀ ବୋଲି ମନେ ହୁଅନ୍ତି । ତାଙ୍କ ଜୀବନୀ ପଢ଼ୁ ପଢ଼ୁ ମନେହୁଏ ସେ ଯେପରି ଏକାଧାରେ ଋଷିଆର ନବଯୁଗ ବିଧାୟକ ରାଜା ପିଟର୍ ଓ ଉତ୍ତମ ଇଂରେଜରାଜା ଆଲ୍‌ଫ୍ରେଡ଼ । ଜ୍ଞାନ ଓ କର୍ମର, ସଂପଦ ଓ ସଂସ୍କୃତିର, ପ୍ରାଚୀନ ଓ ନୂତନର, ଧନ ଓ ସାରଲ୍ୟର ଏପରି ଉଚ୍ଚକୋଟିର ମିଶ୍ରଣ ସହଜରେ ଦେଖାଯାଏ ନାହିଁ । ଏପରି ଏକ ଦୂରଦ୍ରଷ୍ଟା ଶାସକ ପାଇଁ ବାମଣ୍ଡା ପରି ଏକ ଗ୍ଭେଟ ରାଜ୍ୟ ଉପଯୁକ୍ତ କ୍ଷେତ୍ର ନ ଥିଲା । ସେ ପ୍ରତିଭାର ପ୍ରକୃଷ୍ଟ ବିକାଶ ହୋଇଥାନ୍ତା ଗୋଟିଏ ବିରାଟ ଜାତିର ନାୟକ ଓ ଶାସକ ଭାବରେ । ସାଧାରଣ ଘରେ ଜନ୍ମ ହୋଇଥିଲେ ସର୍ ସୁଢଳଦେବଙ୍କ ଭିତରେ ଓଡ଼ିଆ ଜାତି ଏକ ବରେଣ୍ୟ ନେତା ପାଇଥାନ୍ତା । ଗ୍ଭେଟ ଏକ ରାଜ୍ୟର ରାଜା ହୋଇ ଜନ୍ମରୁ ସୁଢଳଦେବ ଓ ଓଡ଼ିଆ ଜାତି ଅଭିଶପ୍ତ ହୋଇଛନ୍ତି ।

କିନ୍ତୁ ବ୍ୟକ୍ତିଗତ ଭାବରେ ଏପରି ଜୀବନର ଐତିହାସିକ ମୂଲ୍ୟ କେବେହେଲେ କମିବ ନାହିଁ । ବାମଣ୍ଡା ପରି ଏକ ଅନୁନ୍ନତ ଜଙ୍ଗଲି ରାଜ୍ୟକୁ ଯେଉଁ ଲୋକ ନିଜ ଜୀବନକାଳରେ ଏକ ଆଦର୍ଶରାଜ୍ୟ କରି ଗଢ଼ି ପାରିଲା, ଯେଉଁ ଲୋକ ଇଂରାଜି ନ ଜାଣିଥିଲେ ମଧ୍ୟ ଓଡ଼ିଶାରେ ପ୍ରଥମ ଟେଲିଫୋନ୍, ପ୍ରଥମ ମୋଟର କାର, ପ୍ରଥମ ପାଣିକଳ, ପ୍ରଥମ ବିଜୁଳି-

କାରଖାନା, ପ୍ରଥମ ନିଶାନିବାରଣ ପ୍ରବର୍ତ୍ତନା କରିପାରିଥିଲି, ଯିଏ ଦୁର୍ଗମ ନେଦବଗଡ଼କୁ ଜଙ୍ଗଲର ବୃଷ୍ଟିଦଂସଜନେନଳସର କରି ପାରିଥିଲି, ସେହି କ୍ଷଣଜନ୍ମା ନରପୁଂଗବ, କେବଳ ଜଣେ ରାଜୋତ୍ତମ ନୁହନ୍ତି ନରୋତ୍ତମ ଭାବରେ ମଧ୍ୟ ଜାତିର ସର୍ବଦା ନମସ୍ୟ ହୋଇ ରହିବେ । ଆଜି ଆମ୍ଭେମାନେ ଜନକଲ୍ୟାଣ ରାଷ୍ଟ୍ରର ପ୍ରଚୁର ଶୁଣୁଛୁ । ପ୍ରଚୁର ଖୁବ୍ ହେଉଛି, କିନ୍ତୁ ପ୍ରତ୍ୟକ୍ଷରେ ଲୋକେ ଯେଉଁ ଲାଞ୍ଚ, ମିଛ, ଆତ୍ମ ଓ ସ୍ୱଜନପରିତୋଷଣର ଲୀଳା ଦେଖୁଛନ୍ତି, ଯେପରି ଭାବରେ ଜାତିର ଅର୍ଥ ବ୍ୟକ୍ତିପୁଞ୍ଜର ସ୍ୱାର୍ଥରେ, ନିର୍ଭୟରେ ନିଃସଂକୋଚରେ ଅପବ୍ୟୟିତ ହେବାର ଦେଖୁଛନ୍ତି ଓ ବୁଝୁଛନ୍ତି, ସେଥିରେ ବିଶ୍ୱାସ ଆସୁନାହିଁ । କିନ୍ତୁ ଓଡ଼ିଶା ସହିତ ମିଶ୍ରଣ ହେବାପୂର୍ବରୁ ବାମଣ୍ଡା ଯିଏ ଦେଖିଛି, ସେ ମୁକ୍ତକଣ୍ଠରେ କହିବ ଯେ କ୍ଷଣଜନ୍ମା ସୁଚଳଦେବ ଜନମଙ୍ଗଳ ରାଷ୍ଟ୍ରର ଫଳନ୍ତି ପଚାଶ ପଚାଶବର୍ଷ ପୂର୍ବେ ଏଇ ଅନୁନ୍ନତ ଓଡ଼ିଶା ଦେଶରେ କରି, ତାର ଆଦର୍ଶ ଥୁଆ ଥୁଇ ଯାଇଥିଲେ, ଯାହା ଏତେ ଶକ୍ତିସମ୍ପନ୍ନ ଥିଲା ଯେ, ସିଂହାସନର ଉପବିଷ୍ଟ ବ୍ୟକ୍ତିର ପରିବର୍ତ୍ତିମାନ ଚରିତ୍ରକୁ ଅପେକ୍ଷା ନ କରି ତାହା ଜନସାଧାରଣର ମଙ୍ଗଳ କରିବାରେ ଲାଗିଥିଲା । ରାଜା କହିଲେ ଜନ ଚେତନାର ଧାରଣା ହେଉଛି ଜଣେ ଧନବାନ୍, କ୍ଷମତାବାନ୍, କିନ୍ତୁ ମଦ୍ୟପାୟୀ ଚରିତ୍ରହୀନ ବ୍ୟକ୍ତି । ରାଜା ସୁଚଳଦେବଙ୍କର ରାଜଧାନୀର ବାରମାଇଲ ଭିତରେ କିନ୍ତୁ ମଦ ପ୍ରବେଶ କରୁନଥିଲା, ତାଙ୍କର ରାଜ୍ୟରେ ଅହିଫେନ ଓ ଗଞ୍ଜାର ବିକ୍ରୟ ମଧ୍ୟ କଠୋର ଭାବରେ ନିୟନ୍ତ୍ରିତ ଥିଲା, ପଚାଶବର୍ଷତଳେ ତାଙ୍କର ଜେଲଖାନାର ବନ୍ଦୀମାନଙ୍କ ଦ୍ୱାରା ଖବରକାଗଜ ଛପା ହେଉଥିଲା । ହାୟ ସୁଚଳଦେବ, ରାଜା ହୋଇ ମଧ୍ୟ ଚରମ ଅଭିଶପ୍ତ, ତମେ ଓଡ଼ିଶାରେ ଯାହା ଜନ୍ମ ହେଲ !

ସେ ଉଚ୍ଚକୋଟିର ସୁଶାସକ ଓ ଶାସନସଂସ୍କାରକ ତ ଥିଲେ । ମୁଁ କିନ୍ତୁ ତାଙ୍କୁ ଆଜି ଏକ ଅକୁତୋଭୟ ଜାତିଗତପ୍ରାଣ ଭାରତୀୟ ପେଟ୍ରିୟଟ୍ ଭାବରେ ନମସ୍କାର କରେଁ । ଗତ ୩୦ ବର୍ଷ ହେବ ଭାରତରେ ପେଟ୍ରିୟଟର ଏକ ବଡ଼ ମାନଦଣ୍ଡ ହେଉଛି ଇଂରେଜକୁ ଯେତେ ଯିଏ ଗାଳି ଦେଇ ପାରିଲା । ଆମର ଅନେକ ନେତାଙ୍କଠାରେ ବୁଦ୍ଧି, କର୍ମ, ଚରିତ୍ରରେ ଆଉ ବିଶେଷ ବିଶିଷ୍ଟତା ଥିବା ପରି ଜଣା ପଡ଼େନା । କିନ୍ତୁ ପଚାଶ ବର୍ଷ ତଳେ ଜଣେ ଦେଶୀୟ ରାଜା ଯାର ଭାଗ୍ୟ-ସୂତ୍ର ଇଂରେଜ ଶାସକର ହାତ ମୁଠାରେ ବୋଲି ସେ ନିଜେ ଜାଣେ, ଇଂରେଜକୁ ଗାଳିଦେଇ ନେତା

ଖନିବା ଯେତେବେଳେ କେହି କଳ୍ପନା ମଧ୍ୟ କରିପାରୁନଥିଲେ, ଯେତେବେଳେ ଇଂରେଜ-ଶାସକର ପ୍ରତାପ ଏ ଦେଶରେ ନିର୍ବିରୋଧ ଓ ନିରଙ୍କୁଶ ସେତିକବେଳେ ସେ ଶାସକ-ଇଂରେଜମାନଙ୍କର ଭାରତୀୟମାନଙ୍କ ହସ୍ତରେ ପରାଭବ ଏପରି ସ୍ପଷ୍ଟ, ବ୍ୟଞ୍ଜନାମୟ ଭାଷାରେ ବ୍ୟକ୍ତ କରି ପାରିଥିଲେ—

ଦେଖି ଦେଖି ହତ୍ୟାକାଣ୍ଡ ଆସିମିଲା ଆସି
ଅସ୍ତ୍ର ଧରି ସଜହେଲେ ଶ୍ୱେତଦ୍ୱୀପବାସୀ ।

*  *  *  *  *

କାଲ୍ପୀ ଗିରିପାଶେ ଭିଡ଼ି ଗୋଳା ବରଷିଲେ
ଘୃତ ଫୁଲାଇ ଶତ୍ରୁଙ୍କ ସଞ୍ଚିତ ଲୁଟିଲେ ।
ଦୁର୍ମଦ ଝାନ୍ସୀ ସିପାହୀ ମାରି ଅକାତରେ
ଶୁଭ୍ର କଲେ ରଣକ୍ଷେତ୍ର ଶ୍ୱେତାଙ୍ଗ ଶବରେ ।
ନିଜ ସେନା ଅଲ୍ପୀୟସୀ ଦେଖି କମିସ୍ନର
କାଲ୍ପୀ ଭିତରୁ ଯିବାକୁ ହେଲେ ତରତର ।
କାଲ୍ପୀରୁ ବାହାରି ଯହେ ଶ୍ୱେତାଙ୍ଗ ସକଳେ
ବାଳକା ମଣ୍ଡଳୀ ସଙ୍ଗେ ଚଳିଲେ ଚପଳେ ।
ଚଳନ୍ତେ ମାର୍ଗରେ ସବୁ ବିଦ୍ରୋହୀ ନୃଶଂସ
ସଦ୍ଭରେ ମାଇଲେ ଘେରି ହୋଇ କ୍ରୋଧବଶ ।
ଦୁଗ୍ଧକଣ୍ଠ ଶିଶୁ, ନାରୀ କାହୁଁ ନ ରଖିଲେ
ହୃଦୟ ବିଦାରି ହତ୍ୟାକାଣ୍ଡ ବିରଚିଲେ ।
"ଜୟ ମା ଜୟ ମା ଲକ୍ଷ୍ମୀବାୟୀ ଜୟ ଜୟ"
ବୋଲି ବୋଲି ରାଣୀଠାକୁ ଗଲେ ସୈନ୍ୟଚୟ ।

(ବୀରବାମା ୮୪-୯୨ ପଂକ୍ତି)

କେବଳ ସେତିକ ନୁହେଁ ଏଇ ଦେଶୀୟ ରାଜା ବୀର-ଲଳନା, ଲକ୍ଷ୍ମୀବାଈଙ୍କର ଏକ ଅଶ୍ୱାରୋହିଣୀ ପ୍ରତିମା ଗଠନ କରି ନିଜ ଉଦ୍ୟାନର ଅଳଙ୍କାରରୂପେ ସ୍ଥାପିତ କରିଥିଲେ, ଯେଉଁ ଉଦ୍ୟାନରେ କି ଇଂରେଜ ରାଜପୁରୁଷମାନଙ୍କୁ ବିହାର ପାଇଁ ନିମନ୍ତ୍ରଣ କରାଯାଉଥିଲା । ଧନ୍ୟ ତୁମର ଷଣ୍ଢ୍ୱୋଚିତ ଅକୁତୋଭୟତା ସୂଚକଦେବ; ଭାରତ ମାତାର ଜଣେ ଯୋଗ୍ୟ ମାତୃପ୍ରାଣ ପୁତ୍ରରୂପେ ତୁମକୁ ମୁଁ ନମସ୍କାର କରେଁ ।

ସୁରେନ୍ଦ୍ରଲାଲଦେବଙ୍କ ଶିକ୍ଷା ଓ ସଂଗଠନ ବୃଦ୍ଧି ଓ ପ୍ରାଚୀନଭାରତୀୟ ରୀତିରେହିଁ ହୋଇଥିଲା । ସେ ଇଂରେଜୀ ଜାଣିନଥିଲେ । ଅଥଚ ପ୍ରାଚୀନ ଭାରତୀୟ ଆଦର୍ଶରେ ଅନୁପ୍ରାଣିତ ହୋଇହିଁ ସେ ପ୍ରଜା-ପାଳକ, ଉତ୍ତମ ଶାସକ ହୋଇ ପାରିଥିଲେ, ରାଜ୍ୟର ସକଳ ପ୍ରକାର ଉନ୍ନତି କରି ପାରିଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ ଇଂରାଜୀର ବିନା ସାହାଯ୍ୟରେ ସ୍ୱାଧୀନତାପ୍ରାପ୍ତ ଭାରତବର୍ଷ ତାର ସକଳ ବ୍ୟବସ୍ଥା ତାର ନିଜ ଦେଶୀୟ ଭାଷାମାନଙ୍କ ସାହାଯ୍ୟରେ କରିପାରେ ।

ପରିଶେଷରେ ଓଡ଼ିଆ ଜାତି ଯେ ସାହିତ୍ୟିକ ସୁରେନ୍ଦ୍ରଲାଲଦେବଙ୍କ ନିକଟରେ ଚିରଋଣୀ ରହିବ ଏକଥା • ଦର୍ଶାଇଦେଇ ଏ ପ୍ରବନ୍ଧ ଶେଷ କରେଁ । ଗୀରବାମା ଓ ଚନ୍ଦ୍ରୋପୂଜାର କବି ହିସାବରେ ଓଡ଼ିଆ ସାହିତ୍ୟର ଇତିହାସରେ ସୁରେନ୍ଦ୍ରଲାଲଦେବଙ୍କ ସ୍ଥାନ ସୁନିଶ୍ଚିତ । କିନ୍ତୁ ବିଦ୍ୟାରତ୍ନଙ୍କ ସମ୍ପାଦକତ୍ୱରେ ଯେଉଁ ସମ୍ବଲପୁର ହିତୈଷିଣୀ ଓଡ଼ିଆ ସାହିତ୍ୟରେ ନବ ଯୁଗର ଆବାହକ ହୋଇଥିଲା, ତାର ପ୍ରତିଷ୍ଠାତା ଓ ପୃଷ୍ଠପୋଷକ ଭାବରେ ରାଧାନାଥ, ଫକୀରମୋହନ, ମଧୁସୂଦନ ପ୍ରଭୃତି ଉତ୍କଳର ଶ୍ରେଷ୍ଠ କବିମାନଙ୍କର ମାନାଦରକାରୀ ପ୍ରତିଭାପୂଜକ ବାମଣ୍ଡୀ ରାଜପୁରୁଷଭାବରେ ସର୍ ସୁରେନ୍ଦ୍ରଲାଲଦେବଙ୍କ ସ୍ମୃତି ଓଡ଼ିଆ ସାହିତ୍ୟରେ ଚିର ସମ୍ମାନିତ ହୋଇ ରହିବ ।

ଶେଷରେ, ସେହି ପଣ୍ଡିତ, ସାହିତ୍ୟିକ, ବୈଜ୍ଞାନିକ, ଦୂରଦ୍ରଷ୍ଟା ଶାସକ ଓ ସଂସ୍କାରକ, ଅକୃତୋଭୟ ଦେଶପ୍ରେମୀ, ଗୁଣୀଜନାଗ୍ରହୀ, ଆସମୋଦ୍ୟକର୍ମୀ ରାଜଶ୍ରେଷ୍ଠ ଓ ପୁରୁଷଶ୍ରେଷ୍ଠ ସର୍ ସୁରେନ୍ଦ୍ରଲାଲଦେବଙ୍କ କୀର୍ତ୍ତି ପ୍ରତି ମୋ ଦେଶବାସୀଙ୍କର ଦୃଷ୍ଟି ଆକର୍ଷଣ କରିବାର ସୁଯୋଗ ପାଇ, ମୁଁ ବାମଣ୍ଡା ଦରବାରପ୍ରତି ଧନ୍ୟବାଦ ଜଣାଉଛି ।

ସମ୍ବଲପୁର
୨୧ । ୨ । ୫୭

ଇତି
ମାୟାଧର ମାନସିଂହ

# ଆଗ୍ରହ

ଯୋଗଜନ୍ମା ବାମଣ୍ଡାଧୀଶ୍ୱର ସ୍ୱର୍ଗୀୟ ସାର୍ ବାସୁଦେବ ସୁଡଳ-ଦେବଙ୍କର ଦୈବତ-ସୁଲଭ ନାତିବସ୍ତର ଜୀବନବୃତ୍ତାନ୍ତ ସହିତ ତାଙ୍କ କାବ୍ୟକ କବିତା ଓ ଅଳଙ୍କାରଶାସ୍ତ୍ର-ପାରଦର୍ଶିତା-ଦ୍ୟୋତକ ଅଳଙ୍କାର ବୋଧୋଦୟ ପ୍ରଭୃତି ଗୋଟିଏ ଗ୍ରନ୍ଥରେ ସଙ୍କଳନ କରାଇ ବର୍ତ୍ତମାନର ବାମଣ୍ଡା ରାଜା ସାହେବ ଶ୍ରୀ ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ ଉତ୍କଳର ଯେଉଁ ଚିରାନୁଭୂତ ଅଭାବ ପରିପୂରଣ କରି ଅଛନ୍ତି, ବାସ୍ତବିକ ତାହା ପ୍ରଶଂସାର୍ହ ଏବଂ ବଚନାତୀତ । ବାମଣ୍ଡା ରାଜବଂଶ ସଙ୍ଗେ ମୋର ପିତା, ପିତାମହ ଓ ପ୍ରପିତାମହଙ୍କର ସମ୍ବନ୍ଧ ସାର୍ ବାସୁଦେବଙ୍କ ସମୟରୁ ଆରମ୍ଭ କରି ଦିବ୍ୟଶଙ୍କର ଦେବ, ବଳଭଦ୍ର ବଡ଼କୁମାର ଓ ଜଳଧର ଦେବଙ୍କ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ଲାଗି ରହିଥିଲା ଏବଂ ସେହି ସମ୍ବନ୍ଧ ହିଁ ଅଦ୍ୟାବଧି ଆମ୍ଭମାନଙ୍କ ପର୍ଯ୍ୟନ୍ତ ରହି ଆସିଛି । ସେହି ବଂଶୀୟ ଠାକୁର ଶ୍ରୀ ବୀରେନ୍ଦ୍ରନାଥ ସିଂହ ସାର୍ ବାସୁଦେବଙ୍କ ବହୁତୋମୁଖୀ କର୍ମମୟ ଜୀବନର ଉତ୍କର୍ଷ ଓ ମହାନୀୟତାର ଚିତ୍ରଣ କରି ଅଛନ୍ତି ବଡ଼ ସଂକ୍ଷିପ୍ତ ଅଥଚ ଚିତ୍ତାକର୍ଷକ ଭାବରେ । ବାସୁଦେବ ଥିଲେ ଏକାଧାରରେ ଜ୍ଞାନୀ, ସୌଜନ୍ୟକାନ୍ତ, ବୁଦ୍ଧିମାନ୍, ବିବେକୀ, ଗୁଣଗ୍ରାହୀ, ଆଦର୍ଶ ଶାସକ, ପ୍ରଜାବତ୍ସଳ, ପ୍ରବୀଣ ସାହିତ୍ୟିକ, ଆଲଙ୍କାରିକ, ଦାର୍ଶନିକ ଓ ନୈସର୍ଗିକ ପ୍ରତିଭାସମ୍ପନ୍ନ କବି । ବୀରେନ୍ଦ୍ରନାଥ ତାଙ୍କ ଗୁଣାବଳୀ ଓ କର୍ମନିଷ୍ଠ ଜୀବନର ଦିବ୍ୟ ବିକାଶର ବିଭିନ୍ନ ବିଭାଗ ଗୁଡ଼ିକ ପର୍ଯ୍ୟାୟକ୍ରମେ ଆଲୋଚନା କରି ଅଛନ୍ତି । ବାସୁଦେବଙ୍କ ନିରହଂକାର ନିଃଆଡ଼ମ୍ବର ଜୀବନପଦ୍ଧତି କେବଳ ଅନ୍ୟାନ୍ୟ ରାଜନ୍ୟମଣ୍ଡଳୀରେ ନୁହେଁ, ସମଗ୍ର ଭାରତର ପଣ୍ଡିତ ମଣ୍ଡଳୀରେ ଯେଉଁ ଅପ୍ରତିହତ ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଷ୍ଠା ଲାଭ କରିଛି ବାସ୍ତବିକ ତାହାର ପଟାନ୍ତର ନାହିଁ । ଶାସକ ଭାବରେ ଦୁଃଖୀ, ରଙ୍କୀ ପ୍ରଜା ପୁଞ୍ଜର ଅଭାବ ଦୂରକରିବା ସଙ୍ଗେ ସଙ୍ଗେ ରାଜ୍ୟର ପ୍ରଗତି-ଶୀଳ ଜୀବନ ପରମ୍ପରାର ଯେଉଁ ଯେଉଁ ଦିଗରେ ଯେଉଁ ଯେଉଁ ପ୍ରକ୍ରିୟା ବଳରେ ସର୍ବାଙ୍ଗୀନ ଉନ୍ନତି ସମ୍ପାଧିତ ହେବା ସମୀଚୀନ ରାଜା ବାସୁଦେବ ସତେ ଯେପରି ଈଶ୍ୱରାଦିଷ୍ଟ ହୋଇ ସେହି ସେହି ଦିଗରେ ସ୍ୱକୀୟ ଜୀବନକୁ ନିୟୋଜିତ କରିବା ଲାଗି କ୍ଷଣଜନ୍ମାରୂପେ ଜନ୍ମଲାଭ କରିଥିଲେ ଏବଂ ନଶ୍ୱର ଦେହ ଧାରଣ କରି କର୍ମଜୀବନର ମହାନ୍ତ୍ର ପଦେ ପଦେ

ପରିପାଳନ କରିବାଦିଗରେ ଯେଉଁ ଅଲୌକିକ କୀର୍ତ୍ତି ଅର୍ଜନ କରିଯାଇ ଅଛନ୍ତି ତାହା ତାଙ୍କୁ ଅବିନଶ୍ୱର ରଖିବ ଯୁଗ ଯୁଗ ଧରି ।

ଚଳଚିତ୍ତଂ ଚଳଦ୍‌ବିତ୍ତଂ ଚଳଜ୍ଜୀବନଯୌବନଂ
ଚଳାଚଳମିଦଂ ସର୍ବଂ କୀର୍ତ୍ତି ଯସ୍ୟ ସ ଜୀବତି ।

ଏହି ନିଗୂଢ ସତ୍ୟର ଉଜ୍ଜ୍ୱଳ ପ୍ରତୀକ ହିଁ ବାମଣ୍ଡାମଣ୍ଡନ ରାଜା ବାସୁଦେବ । ସାଧନାରେ ଆପ୍ରାଣ ପ୍ରଚେଷ୍ଟା, କର୍ତ୍ତବ୍ୟରେ କଠୋର ଅଟଳତା, ଗୁଣଗ୍ରାହକତାରେ ସ୍ୱାଭାବିକ ଅଭିବ୍ୟକ୍ତି ଏବଂ ସର୍ବୋପରି ଗଭୀର ଜ୍ଞାନଗରିମା ଓ ଅନନ୍ୟସାଧାରଣ ପାଣ୍ଡିତ୍ୟ ସହିତ ନୈତିକ ଜୀବନର ଜ୍ୱଳନ୍ତ ଚରିତ୍ରବତ୍ତା ରାଜା ବାସୁଦେବଙ୍କୁ ସ୍ୱର୍ଗାଦପି ମହୋଚ୍ଚ-ସ୍ତରରେ ରଖିପାରିଛି, କହିବା ବାହୁଲ୍ୟ ମାତ୍ର । ୱୀରେନ୍ଦ୍ରନାଥ ଏହି ବୈଶିଷ୍ଟ୍ୟର ଯଥୋଚିତ ପ୍ରତିପାଦନରେ କୃତକାର୍ଯ୍ୟ ହୋଇଅଛନ୍ତି ଏହାହିଁ ସର୍ବାଧିକ ଆନନ୍ଦର ବିଷୟ ।

ରାଜା ବାସୁଦେବଙ୍କର ପାରିବାରିକ ଜୀବନର ସମ୍ୟକ୍ ପରିଚୟ ଦେଇସାରି ତାଙ୍କ ମହଦୁଦ୍ୟମପ୍ରସୂତ ବିବିଧ ଉନ୍ନତିସାଧନର ବିଭିନ୍ନ ପନ୍ଥାଗୁଡ଼ିକ ଲେଖକ ସଂକ୍ଷିପ୍ତଭାବରେ ଦେଖାଇଅଛନ୍ତି । ଏହି ଦୃଷ୍ଟିରୁ ରାଜ୍ୟରେ ଉନ୍ନତ ଶିକ୍ଷାର ସଂପ୍ରସାରଣ, ଶାସନଶୃଙ୍ଖଳାର ଉଚିତର ବ୍ୟବସ୍ଥା, ମାନମନ୍ଦିର ଓ ବିଜ୍ଞାନାଗାର ନିର୍ମାଣ, ମୁଦ୍ରାଯନ୍ତ୍ର ପ୍ରତିଷ୍ଠା, ରାଜ୍ୟର ଅନ୍ୟାନ୍ୟ ଆଭ୍ୟନ୍ତରୀଣ ଉନ୍ନତିର ଦ୍ୱାରୋନ୍ମୋଚନ, ଜଳସେଚନ ବ୍ୟବସ୍ଥା, ରାଜୋଦ୍ୟାନ, ମାଦକଦ୍ରବ୍ୟର ନିରାକରଣ, ଗୋ ସେବା, ବ୍ୟବସାୟବାଣିଜ୍ୟ, ସ-ମିଲ୍ ସ୍ଥାପନ, ବିଭିନ୍ନ ଦିଗରେ ବୃହତ୍ତର ଉତ୍କଳ ଓ ପଡ଼ୋଶୀ ପ୍ରଦେଶମାନଙ୍କ ସଙ୍ଗେ ଘନିଷ୍ଠତର ସଂଯୋଗ, ପଣ୍ଡିତସଭା ସଂଗଠନ ଏବଂ ଦସ୍ୟୁଦମନ ପ୍ରଭୃତି ଅସଂଖ୍ୟ ମହନୀୟ କର୍ମର ସୁଦକ୍ଷ ପ୍ରବର୍ତ୍ତକ ଓ ପ୍ରବର୍ତ୍ତିକ ଭାବରେ ରାଜା ବାସୁଦେବ ଲକ୍ଷ୍ୟ ଲାଭଲାଗି ଯେପରି ଅପ୍ରତିହତ ବଳରେ ଅଗ୍ରସର ହୋଇଥିଲେ, ସେଗୁଡ଼ିକର ଆବଶ୍ୟକତା ଓ ଉତ୍କର୍ଷ ରୂପାୟିତ ହୋଇଛି ରାଜାଙ୍କ ଜୀବନ ବୃତ୍ତାନ୍ତରେ । ଏତଦ୍‌ଭିନ୍ନ ସୁବଳଦେବଙ୍କ ସମ୍ବନ୍ଧରେ କବିବର ରାଧାନାଥ, ବିଜ୍ଞାନାଚାର୍ଯ୍ୟ ଯୋଗେଶଚନ୍ଦ୍ର ବିଦ୍ୟାନିଧି, ସାହିତ୍ୟିକ ବିଶ୍ୱନାଥ, ଭକ୍ତକବି ମଧୁସୂଦନ ପ୍ରଭୃତିଙ୍କର ମନ୍ତବ୍ୟଗୁଡ଼ିକ ପ୍ରକାଶ କରିବା ଫଳରେ ଜୀବନ ବୃତ୍ତାନ୍ତର ମହତ୍ତ୍ୱ ବହୁଗୁଣିତ ହୋଇଅଛି ।

ଗ୍ରନ୍ଥାବଳୀର ପ୍ରକାଶକ ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଦେବ ବାସୁଦେବଙ୍କର ଅନ୍ୟାନ୍ୟ ରଚନାବଳୀ ସଂଗ୍ରହ କରିବାକୁ ବହୁ ଉଦ୍ୟମ କରିଥିଲେ ସୁଦ୍ଧା ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହୋଇପାରି ନାହାନ୍ତି । ଆଉ କେତେଗୁଡ଼ିଏ ରଚନା ସେ ସଂଗ୍ରହ କରିବାଲାଗି ତଥାପି ଉଦ୍ୟମବିରତ ହୋଇ ନାହାନ୍ତି । ଅନେକ ରଚନା ନ ମିଳିବାର ଅନେକ କାରଣ ଥାଇପାରେ । ମାତ୍ର ତନ୍ମଧ୍ୟରୁ ଗୋଟିଏ ହେଉଛି, ମନସ୍ୱୀ ଉଦାରଚେତା ବାସୁଦେବ ଧାରାବାହିକ ଭାବରେ ନିଜେ ନିଜ ରଚନା ଗୁଡ଼ିକ ସାଇତି ରଖି ବା ରଖାଇ ସେଗୁଡ଼ିକର ମୁଦ୍ରଣ ଫଳରେ ନାମ ଅର୍ଜନ କରିବାକୁ ଏକାନ୍ତ ପଶ୍ଚାତ୍‌ପଦ । ତାଙ୍କର ଗୋଟାଏ ବଦ୍ଧମୂଳ ଧାରଣା ଥିଲା ଯେ, ଦୁନିଆରେ ମହା ମହା କବି, ଦାର୍ଶନିକ ଓ ତତ୍ତ୍ୱଜ୍ଞ ମଣ୍ଡଳୀ ବିଶ୍ୱଜୀବନ ବିକାଶ ଦୃଷ୍ଟିରୁ ଦୁର୍ମୂଲ୍ୟ ସାମଗ୍ରୀ ପରିବେଷଣ କରି ଯାଇଥିବା ବେଳେ ବା କରୁଥିବା ଅବସ୍ଥାରେ ତାଙ୍କ ଜ୍ଞାନ ସେମାନଙ୍କ ନିକଟରେ ନଗଣ୍ୟ ଓ ଅତୀବ ତୁଚ୍ଛ; ତେଣୁ ଏକାନ୍ତ ଅତଥ୍ୟ ନହେଲେ ସୁଦ୍ଧା ତାଙ୍କ କୃତିର ବିଶେଷତ୍ୱ ଦେଖାଇବସିବା ଧୃଷ୍ଟତାର ପରିଚୟ ଦାନ କରିବ ମାତ୍ର । ଏହିପରି ନାନା କାରଣରୁ ଚନ୍ଦ୍ରମ୍ଭୁବଣ କରାଇ ଉତ୍ତ୍ରିମ ମିଛି ନାମ ପ୍ରସାର କରିବାରେ ତାଙ୍କର ଆଦୌ ମାତ୍ର ଇଚ୍ଛା ନଥିଲା, ବରଂ ପ୍ରାଚ୍ୟବର୍ଷ ଭାରତର ବିଭିନ୍ନ ଅଞ୍ଚଳରୁ କବି, ପଣ୍ଡିତ, ସାଂଖ୍ୟ, ନ୍ୟାୟ, ମୀମାଂସା ପ୍ରଭୃତି ବିଭିନ୍ନ ଶ୍ରେଣୀର ଦାର୍ଶନିକ ମାନଙ୍କୁ ଏକତ୍ରିତ କରାଇ ନାନାବିଧ ଶାସ୍ତ୍ରାଲୋଚନା, ଜଟିଳ ସମସ୍ୟାପୂରଣ, ଧର୍ମମାହାତ୍ମ୍ୟଚର୍ଚ୍ଚା କରିବାରେ ତାଙ୍କର ଆନନ୍ଦ-ସିନ୍ଧୁ ଉଦ୍‌ବେଳିତ ହୋଇ ପଡୁଥିଲା ଅସମ୍ଭାଳ ହୋଇ । ପ୍ରାୟ ପ୍ରତିଦିନ ଉତ୍କଳର ବିଭିନ୍ନାଞ୍ଚଳର ପଣ୍ଡିତମାନଙ୍କୁ ଧରି ଏପରି ସମସ୍ତ ଅତିବାହିତ କରି ଜୀବନର ଦୁର୍ବାର ପିପାସା କଥଞ୍ଚିତ୍ ମେଣ୍ଟାଇ ନେଉଥିଲେ ସେ । ପଣ୍ଡିତଶିରୋମଣି ବକୁଳ କବି ଭୁବନେଶ୍ୱର ମିଶ୍ର (ଆନନ୍ଦ ଦାମୋଦର ଚମ୍ପୂ, ଶବୋପ୍ପଲା ଚମ୍ପୂ ପ୍ରଭୃତିର ପ୍ରଣେତା) ତାଙ୍କର ସଂସ୍କୃତ ଶିକ୍ଷାର ସର୍ବ ପ୍ରଧାନ ଗୁରୁରୂପେ ସର୍ବାଧିକ ଆରାଧ୍ୟ ଥିଲେ । ପଣ୍ଡିତ ମଧୁସୂଦନ ତର୍କବାଚସ୍ପତି ପଣ୍ଡିତ ସଭାର ଆୟୋଜକ ଥିଲାବେଳେ ଏବଂ ଭୁବନେଶ୍ୱର (ବଡ଼ପଣ୍ଡା) ଶ୍ରେଷ୍ଠ ଶିକ୍ଷାଗୁରୁ ହୋଇ ଶାସ୍ତ୍ରାଲୋଚନାରେ ଭାଗ ନେଉଥିଲା ବେଳେ ଜଟିଳତମ ସମସ୍ୟାର ସମାଧାନ ହୋଇଯାଉଥିଲା ଅତି ସହଜରେ । କାଶୀର ଶ୍ରେଷ୍ଠ ପଣ୍ଡିତ ଭାରତ ମାର୍ତ୍ତଣ୍ଡ ଶିବକୁମାର ଶାସ୍ତ୍ରୀ ରାଜା ବାସୁଦେବ ଓ ତାଙ୍କ ଗୁରୁଙ୍କର ଶାସ୍ତ୍ରାଲୋଚନାର ସାକ୍ଷାତ ପରିଚୟ ପାଇ ବିସ୍ମିତ ହୋଇ ଥରେ କହିଥିଲେ,—

ବାସୁଦେବ ନୃପତିଃ ପ୍ରବୃତ୍ତ
ଯତ ସାଂମୃତମପ୍ତି ମରଭୂମୌ
ସାପି ଶ୍ରୀଦ୍ୟ ଭୁବନେଶ୍ୱର ଯୋଗା—
ଚ୍ଛୋଭିଚ୍ଛେବ କମଳା ସହ ବାସ୍ତୁ ।

ସାଧକ ବାସୁଦେବଙ୍କର କର୍ମମୟ ଜୀବନରେ ଆତ୍ମପ୍ରତିଷ୍ଠା ଲୋଭର ବାସନା ଲଗି ଅବକାଶ ବା କାହିଁ ?

ବନ୍ଧୁ ରବୀନ୍ଦ୍ରନାଥ ବାସୁଦେବଙ୍କ ରଚନାବଳୀ ମଧ୍ୟରୁ କେବଳ 'ବୀରବାମା' 'ଚନ୍ଦ୍ରୋଦୟିକା', 'ଜନ୍ମାଷ୍ଟମୀ', 'ଅଳଙ୍କାର ବୋଧୋଦୟ', ଓ ସ୍ୱୟଂ ରଚିତ 'ଧର୍ମଶିକ୍ଷା' ଏଇ କେତୋଟିମାନ ସଂକଳନ କରିଅଛନ୍ତି । 'ଚନ୍ଦ୍ରୋଦୟିକା' ବାସୁଦେବଙ୍କର ଏକ ବିଶିଷ୍ଟ ଉପାଦେୟ ରଚନା । ସମସାମୟିକ ରାଧାନାଥଙ୍କର ରଚନା ଶୈଳୀ ଓ ଯୋଜନାଗତ ପ୍ରଭାବ ଏଥିରେ ଅନେକାଂଶରେ ପଡ଼ିଥିଲେହେଁ କବିଙ୍କ କଳ୍ପନାବଳୀର କମନୀୟତା ଓ ନୈସର୍ଗିକ ରଚନାପାଟବ ଏଥିରେ ସ୍ପଷ୍ଟ ହୋଇଛି । 'କଲୌ ଚନ୍ଦ୍ରୋଦୟିକା ଗଙ୍ଗା' ଏହି ଉକ୍ତିର ଯାଥାର୍ଥ୍ୟ ପ୍ରତିପାଦିତ ହୋଇଛି କବିଙ୍କ 'ଚନ୍ଦ୍ରୋଦୟିକା' ବର୍ଣ୍ଣନାରେ । ବର୍ଣ୍ଣନାର ଚମତ୍କାରିତା ସ୍ତରେ ସ୍ତରେ ବିଦ୍ୟମାନ ଏବଂ ଉତ୍କଳସାହିତ୍ୟ ଆଧୁନିକ ଯୁଗରେ ପଦାର୍ପଣ କରୁଥିବା ବେଳେ ଗମ୍ଭୀର ସାହିତ୍ୟ-ପ୍ରେମୀ ତଥା ପ୍ରଗତିଶୀଳ ସାହିତ୍ୟ ଧାରାର ଚରମ ପୃଷ୍ଠପୋଷକ ବାସୁଦେବ ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କୁ ଏ ଦିଗରେ ଅଧିକ ଅଗ୍ରସର ହେବାଲାଗି ଯେପରି ଭାବରେ ଉତ୍ସାହ ପ୍ରଦାନ କରିଥିଲେ, ତାହାର ସ୍ମୃତି ଉତ୍କଳର ଜାତୀୟଜୀବନର ଇତିହାସ ପୃଷ୍ଠାରୁ କଦାପି ଲିଭିଯାଇ ନପାରେ । ଯଥାଶକ୍ତି ନିଜେ ଯୁଗୋଚିତ ପଦ୍ଧତି ଅନୁସରଣ କରିବା ସଙ୍ଗେ ସଙ୍ଗେ ତାଙ୍କର ଅଦମ୍ୟ ପ୍ରଚେଷ୍ଟା ଜାତୀୟ ଜୀବନ ତଥା ଜାତୀୟ ସାହିତ୍ୟକୁ କିପରି ଅଗ୍ରଗାମୀ କରାଇଥିଲା, ତାହାର ଜ୍ୱଳନ୍ତ ପ୍ରମାଣ ଦିଏ ଏହି ଚନ୍ଦ୍ରୋଦୟିକା । ସ୍ଥଳ ବିଶେଷରେ ଏହି ଅନ୍ୟତମ ଯୁଗସ୍ରଷ୍ଟା କବିଙ୍କ ଲେଖନୀ କମନୀୟ ଭାବ ଭାଷା ଭଙ୍ଗୀରେ ତାଙ୍କ ଭାବୁକ ହୃଦୟର ଉତ୍କର୍ଷ ଦେଖାଇ ଦେଇଛି ତାଙ୍କ କଳାବିଳାସ ନୈପୁଣ୍ୟର ପରିମାପକ ଭାବରେ । ଯଥା,—

ଉଷାକାଳେ ସ୍ନାନ-ଲୀଳା ନାରୀବୃନ୍ଦେ ତୀର ହୋଇଥାଏ ଘନ
ଅମଳ ତରଙ୍ଗେ ଦଳ ହେଉଥାଏ ରମଣୀ-ଲାବଣ୍ୟ-ବନ ।

ମୁଗ୍ଧା ମଧ୍ୟା ପ୍ରୌଢ଼ା ପ୍ରଭୃତି ଲଳନା ଶ୍ରେଣୀ ଶ୍ରେଣୀ ମାଳ ମାଳ,
ଘଣ୍ଟାଙ୍କିତ ଶିର-କଟି ହସ୍ତ ହୋଇ ଯାଆନ୍ତି ବାମାଜାଳ ।

* * * *

ଜଳେ ଅପଘନ ମଜ୍ଜାଇ ରହନ୍ତି ଦିଶୁଥାଇ ମାତ୍ର ମୁଖ,
ତା ଦେଖି ମଧୁପ ପଙ୍କଜ ଲୋଭରେ ବେଢ଼ନ୍ତି ହୋଇ ସମୁଖ ।
କେଶକୁ ଶୈବାଳ ମନେ କରି ମୀନା- ବଳୀ ଧାଆନ୍ତି ସନ୍ତରେ,
ବରଟା ସହିତ ମରାଳ ଆସଇ ବାହୁମୃଣାଳ ଧ୍ୟାନରେ ।
ତଟବାଟିକାରୁ ଉପହାର ପୁଷ୍ପ ତରଙ୍ଗକରରେ ଧରି,
ଭୁରୁମ୍ଭ ସମୀପେ ଅଙ୍ଗନଘ ଆସି ଭେଟିଲି ସେବକା ପରି ।
ପୁରୀ ଅନ୍ତେ ସ୍ୱଚ୍ଛନୀର ତେଲନଦୀ ସପତ୍ନୀ ଭାବରେ ମିଶେ,
ରୋଷଭରେ ଦେହ ଫୁଲାଇ ରହିଛି, ନଚଳଇ ପରି ଦିଶେ ।

* * * *

ଉଦାର ହୃଦୟା ଚନ୍ଦ୍ରପ୍ରଭା ନିଜ ସପତ୍ନୀମାନଙ୍କୁ ଧରି,
ସ୍ୱପତି ଜଳଧି— ପାଶକୁ ଯାଉଛି ଦ୍ୱେଷଭାବ ପରିହରି ।
ମହତ ଲୋକର ଏହିପରି ରୀତି ମହତ ଅଟେ ବେଭାର,
କ୍ଷୁଦ୍ର ହୋଇ କଳୁ କ୍ଷମତା ପାଇଲେ ହିଂସା ବଢ଼େ ଭାରି ଭାର ।

'ଅଲଙ୍କାର ବୋଧୋଦୟ' ରଚନାର ମୂଳ ଲକ୍ଷ୍ୟ, ଆଧୁନିକ ଯୁଗରେ ବ୍ୟାକରଣ ସମର୍ଥିତ ଭାଷାର ବ୍ୟବହାର ଓ ଅଲଙ୍କାର ପ୍ରୟୋଗ ଲାଗି ଯଥାର୍ଥ ଉତ୍ସାହଦାନ । ସାହିତ୍ୟଦର୍ପଣ, କାବ୍ୟପ୍ରକାଶ, ସରସ୍ୱତୀ-କଣ୍ଠାଭରଣ ପ୍ରଭୃତି ଉପାଦେୟ ଅଲଙ୍କାର ଶାସ୍ତ୍ରଗୁଡ଼ିକର ସମାନ୍ତରାଳ ଭାବରେ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ କରାଇବା ଲାଗି ବାସୁଦେବ ଓଡ଼ିଆ ଭାଷାରେ ଅଲଙ୍କାର ଶାସ୍ତ୍ରର ଅଭାବ ଦେଖି ଏବଂ ତାହାର ଆବଶ୍ୟକତା ପଦେ ପଦେ ଉପଲବ୍‌ଧି କରି ଲେଖକମାନଙ୍କୁ ସରସ ଭାଷା, ଯଥାର୍ଥ ଗୁଣରାଜି, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରାଦିର ବ୍ୟବହାର କରିବା ନିମିତ୍ତ ଅଲଙ୍କାର ବୋଧୋଦୟ ପ୍ରଣୟନ କରି ଅଛନ୍ତି । ଏହାର ପ୍ରଥମ ପରିଚ୍ଛେଦଟି କାବ୍ୟସ୍ୱରୂପ ନିରୂପଣ ଦିଗରେ ପ୍ରକୃଷ୍ଟ ସହାୟକ । ୨ ୟରେ ବାକ୍ୟସ୍ୱରୂପ ନିରୂପଣ, ୩ ୟ ରେ ରସ ନିର୍ଣ୍ଣୟ ଏବଂ ୪ ର୍ଥ ରେ

ଦୋଷ ନିରୂପଣର ପ୍ରଣାଳୀ ପ୍ରଦତ୍ତ ହୋଇଛି । ଦୁଃଶ୍ରବତା, ଅନୁଚିତାର୍ଥ, ଗ୍ରାମ୍ୟତା, ଅପ୍ରତୀତତ୍ୱ, କ୍ଲିଷ୍ଟତ୍ୱ, ଅପ୍ରଯୁକ୍ତତା, ଅବାଚକତା, ସଙ୍କୀର୍ଣ୍ଣତ୍ୱ, ପତତ୍‌ପ୍ରକର୍ଷତା ପ୍ରଭୃତି ଶବ୍ଦ ଦୋଷର ବିଶଦ ଉଦାହରଣ ଦେଇସାରି ବିଚାର କରି ଅଛନ୍ତି ଅର୍ଥ ଦୋଷଗୁଡ଼ିକ । ଏଥିରେ ଅପୁଷ୍ଟତା, ଖ୍ୟାତି-ବିରୁଦ୍ଧତା, ଦୁଷ୍କ୍ରମତା, ବ୍ୟାହତତା, ଅନବୀକୃତତା, ନିର୍ହେତୁତା, ପ୍ରକାଶିତ-ବିରୁଦ୍ଧତା, ସନ୍ଦିଗ୍ଧତା, ଅଶ୍ଳୀଳତା ପ୍ରଭୃତିର ଦୃଷ୍ଟାନ୍ତ ଦେଇ ରସ ଦୋଷାଦିର ବିଚାର କରି ଅଛନ୍ତି ।

ଶବ୍ଦ ଓ ଅର୍ଥ ଉଭୟ ଅଳଙ୍କାରକ୍ଷମ ଜ୍ଞାନ ଲାଗି ଯେଉଁ ଉଦାହରଣ ଗୁଡ଼ିକ ପ୍ରଦତ୍ତ ହୋଇଛି ତାହା ଏତେ ସହଜ ଓ ସୁବୋଧ ଯେ, ଅକବି ଅସାହିତ୍ୟିକ ମଧ୍ୟ ତାହାର ଅବଲମ୍ବନରେ ଯଥାର୍ଥ ପଥର ଅନୁସରଣ କରି ପାରିବ ଅବାଧ ଭାବରେ । ଏଇ ଗ୍ରନ୍ଥଟି ଓଡ଼ିଆ ସାହିତ୍ୟର ଯଥାର୍ଥ ବିକାଶ ଲାଗି ଯୁଗେ ଯୁଗେ ସହାୟକ ହେବ ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ଜାତିସ୍ମର ସାଧକଶେଖର ବାସୁଦେବଙ୍କର ନୈସର୍ଗିକ ପ୍ରତିଭା, ଅଦମ୍ୟ ଉଦ୍ୟମ ଓ ଜ୍ୱଳନ୍ତ ସାଧନାର ଯଥୋଚିତ ପରିଚୟ ଦେବାଲାଗି ଏଇଭଳି ପଦେ ଅଧେ କହି ବସିବା, ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭାର ଅପଳାପ ଭିନ୍ନ ଅନ୍ୟ କିଛି ହୋଇ ନପାରେ । ଜାତୀୟ ଜୀବନର ପ୍ରତ୍ୟେକ ଦିଗରେ ସେହି ମନୀଷୀଙ୍କର ଆଶୀର୍ବାଦ ଆଜି ସମଗ୍ର ଜାତିର କଠୋର କର୍ମ ପଥରେ ପାଥେୟ ହେଉ, ଏହାହିଁ ଅନ୍ତରର ଏକାନ୍ତ କାମନା ।

ପରିଶେଷରେ ବାମଣ୍ଡାର ବର୍ତ୍ତମାନ ରାଜା ସାହେବ ଶ୍ରୀ ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ମହତ୍ ଉଦ୍ୟମ ଯେଉଁ ଚିରନ୍ତନ ଅଭାବ ପୂରଣ କରି ପାରିଛି, ସେଥି ଲାଗି ସେ ସର୍ବଥା ମାନାର୍ହ । ତାଙ୍କ ଉଦ୍ୟମ ଅବିରାମ ଗତିରେ ଉତ୍ତରୋତ୍ତର ବର୍ଦ୍ଧିତ ହେଉ ଏହାହିଁ ଏକାନ୍ତ କାମନା । ଅଳମତି ବିସ୍ତରେଣ ।

ତା ୧୬ । ୪ । ୫୬

ଜୟକୃଷ୍ଣ ମିଶ୍ର
ଅଧ୍ୟାପକ, ରେଭେନ୍‌ସା କଲେଜ, କଟକ ।

# ଅଭିମତ

ବାମଣ୍ଡାର ସ୍ୱର୍ଗତ ନରପତି ସାର୍ ବାସୁଦେବ ସୁଡଳ ଦେବଙ୍କର ରଚନା ସମୂହ, ଗ୍ରନ୍ଥାବଳୀ ଆକାରରେ ପ୍ରକାଶ ଲଭ କରୁଛି । ଊନବିଂଶ ଶତାବ୍ଦୀରେ, ମାତୃ ସାହିତ୍ୟର ଦୈନ୍ୟ ଦୂରୀକରଣରେ ଯେଉଁମାନେ ଥିଲେ ସତତ ପ୍ରଯତ୍ନଶୀଳ ସେମାନଙ୍କ ମଧ୍ୟରେ ସୁଡ଼ଳ ଦେବଙ୍କର ଆସନ ଅତି ଉଚ୍ଚରେ ପ୍ରତିଷ୍ଠିତ । ଗ୍ରନ୍ଥାବଳୀର ପ୍ରାରମ୍ଭରେ ତାଙ୍କର ଜୀବନୀ ଲିପିବଦ୍ଧ ହୋଇଅଛି । ତହିଁରୁ ଜଣାଯାଏ, ସେ ଥିଲେ ଏକାଧାରରେ ଶାସକ, ରସିକ, ଭାବୁକ, କବି ଓ ପଣ୍ଡିତ; ସଂସ୍କାରକ ଓ ସାଧକ, ଦେଶସେବକ ଓ ଗୁଣଗ୍ରାହକ । କବିବର ରାଧାନାଥ ମହାଶୟ ଯାହାରେ ତାଙ୍କୁ ସମ୍ବୋଧନ କରି ଲେଖିଛନ୍ତି:—

• "ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳେ,
ଦେବଦୁର୍ଗ ଦେବ ! ଏବେ ତୀର୍ଥ ସାରସ୍ୱତ,
ବୁଧ-ହଂସ କେଳି ସରଃ, ଅବିଦ୍ୟା ଉଷରେ ।"

ବାସ୍ତବରେ ସୁଡଳଦେବ ଥିଲେ ବୁଧରୂପୀ ହଂସମାନଙ୍କର ଏକାନ୍ତ ଗୁଣଗ୍ରାହୀ ଓ ଏକନିଷ୍ଠ ପରିପାଳକ । ତାଙ୍କର ଚରିତ୍ରବଳ ଅନନ୍ୟ-ସାଧାରଣ । କବି ପ୍ରତିଭାର ଉପାସକ ରୂପେ ତାଙ୍କର ଖ୍ୟାତି ଥିଲା ସମଗ୍ର ଉତ୍କଳବ୍ୟାପିନୀ । କବିବର ରାଧାନାଥ ପ୍ରଭୃତି ଥିଲେ ତାଙ୍କର ପ୍ରେରଣା-ପୁଷ୍ଟ । ରାଜପରିବାରର ବିଳାସ ବ୍ୟସନ ମଧ୍ୟରେ ଭୂମିଷ୍ଠ ଓ ପରିବର୍ଦ୍ଧିତ ହୋଇଥିଲେହେଁ ରାଜକୁମାର ଉପେନ୍ଦ୍ର ଭଞ୍ଜଙ୍କ ପରି ସେ ଥିଲେ ବିଳାସ-ବିମୁଖ ଓ ବାଣୀ-ଉପାସକ । ନିଜେ କେବଳ କବିମାନଙ୍କୁ ପ୍ରେରଣା ପ୍ରଦାନ କରିନାହାନ୍ତି,—ଲେଖନୀ ଚାଳନା କରି, ଉତ୍କଳ ସରସ୍ୱତୀଙ୍କର ଗ୍ରୀବା ମଣ୍ଡନ ଲାଗି ସୁରମ୍ୟ ସୁମନ ହାର ପ୍ରସ୍ତୁତ କରି ଯାଇଛନ୍ତି । ରାଧାନାଥଙ୍କର ଚିଲିକା, ଗଙ୍ଗାଧରଙ୍କର ଉତ୍କଳ ଲକ୍ଷ୍ମୀ, ମଧୁସୂଦନଙ୍କର ଉତ୍କଳ ଗାଥା ପ୍ରଭୃତିର ଆଦର୍ଶ ଓ ଆଭିମୁଖ୍ୟ ଯାହା, 'ଛନ୍ଦୋମାଳା'ର ଲକ୍ଷ୍ୟ ତାହା ଠାରୁ ଭିନ୍ନ ନୁହେ । ପ୍ରକୃତିର ବରପୁତ୍ର ରୂପେ ସୁଡଳଦେବଙ୍କର ପ୍ରକୃତି ରାଜ୍ୟରେ ଥିଲା ଅବାଧ ପ୍ରବେଶ । ସେଥିପାଇଁ ବହୁ ବିଚିତ୍ର ଚିତ୍ର-ଶାଳିନୀ ଛନ୍ଦୋମାଳାର ଅଜସ୍ର ପ୍ରବାହ ତାଙ୍କର ଲେଖନୀରୁ ନିର୍ଗତ ହୋଇଥିଲା ।

'ବୀରବାମା'ରେ ରାଜକବିଙ୍କର ଦେଶପ୍ରୀତିର ବହ୍ନି ପ୍ରଜ୍ୱଳିତ ହୋଇ ଉଠିଛି । ପୂର୍ବପୁରୁଷମାନଙ୍କର ଗୌରବବୈଭବ ଓ ଜନ୍ମଭୂମି ଉତ୍କଳର ପ୍ରାକୃତିକ ବିଭବ କବିଙ୍କ ଅନ୍ତରରେ ଦେଶପ୍ରେମର ପ୍ରଚଣ୍ଡ ତାଣ୍ଡବ ସୃଷ୍ଟି କରିଥିଲା । ତାଙ୍କର ଲେଖନୀ-ନିଃସୃତ "ଅଳଙ୍କାରବୋଧୋଦୟ" ସମ-ସାମୟିକ ସାହିତ୍ୟରେ ଏକ ଅଭିନବ ସୃଷ୍ଟି । କବିତ୍ୱ ଓ ଆଳଙ୍କାରିକତାର ଅପୂର୍ବ ସମନ୍ୱୟରେ ସୁଢଳଦେବଙ୍କର ସାରସ୍ୱତ ସାଧନା ମୂର୍ତ୍ତିମନ୍ତ ହୋଇଥିଲା । ସେ ବାମଣ୍ଡାରେ ଜନ୍ମଲାଭ କରିଥିଲେ ହେଁ ତାଙ୍କ ଉପରେ ସାରା ଉତ୍କଳର ଦାବୀ; ସେ ରାଜା ଓ ବିଦ୍ୟାବିଳାସୀ ଥିଲେ ହେଁ କବିତ୍ୱ କଚପୋଷକତାର ଥିଲେ ଅଦମ୍ୟ ନିର୍ଝର । ତାଙ୍କର ଗ୍ରନ୍ଥାବଳୀ, ଆକାରରେ ଯେତେ କ୍ଷୁଦ୍ର ହେଲେ ହେଁ ସାହିତ୍ୟ ସାଧକ ଜୀବନରେ ଅଭିନବ ପ୍ରେରଣାର ଉତ୍ସ । ସୁଢଳଙ୍କ ପ୍ରେରଣା ବିଶ୍ୱବ୍ୟାପିନୀ ହେଉ ।

ଗୌରୀକୁମାର ବ୍ରହ୍ମା
ଅଧ୍ୟାପକ, ରେଭେନ୍ସା କଲେଜ, କଟକ
୬-୭-୮୭

## ସ୍ୱର୍ଗୀୟ ରାଜା ସାର୍ ବାସୁଦେବ ସୁଡଳଦେବ

### କେ. ସି. ଆଇ. ଇ. ଙ୍କ

# ସଂକ୍ଷିପ୍ତ ଜୀବନ ବୃତ୍ତାନ୍ତ

ସୁଧୀସତ୍ତମ, ପୁଣ୍ୟାତ୍ମା, ଦେଶପୂଜ୍ୟ ରାଜା ସାର୍ ବାସୁଦେବ ସୁଡଳଦେବ ଆଜକୁ ପ୍ରାୟ ଅର୍ଦ୍ଧଶତାବ୍ଦୀ ହେବ ଐତିହାସିକ ପୁରୁଷ ରୂପେ ବିବେଚିତ ହେଲେଣି । ସେ ଉତ୍କଳ ଭୂମିରେ ଯେଉଁ ମୌଳିକ କର୍ମର ସୂଚନା ଦେଇ ଯାଇଅଛନ୍ତି ତାହା ହିଁ ଆଜି ତାଙ୍କୁ ଜାତି ଓ ଦେଶର ଆଗରେ ଅମର କରି ରଖିଅଛି । ତାଙ୍କର ବିରାଟ ବ୍ୟକ୍ତିତ୍ୱ ବଳରେ "ଅଖୋଜ ବାମଣ୍ଡା" ନବୀନ ଜୀବନ ପାଇ ଓ ନବଯୁଗର ଶିକ୍ଷା ତଥା ଆଲୋକ ଲାଭକରି ଉତ୍କଳର ସମୁଚ୍ଚ ଆସନର ଅଧିକାରୀ ହୋଇଅଛି । ସେ ଥିଲେ ସେତେବେଳର ଦେଶାତ୍ମବୋଧହୀନ-ଓଡ଼ିଆଜାତି ଓ ଦେଶର ନିରନ୍ତର ଉପଚିକୀର୍ଷୁ । ଅଧମ ଓଡ଼ିଆଜାତିକୁ ସେ ଅମୂଲ୍ୟ ଓ ଅକ୍ଷୟ ଗୌରବମୟ ଜୀବନ ଦେଇ ଯାଇଅଛନ୍ତି । ବିଶେଷତଃ ଯେଉଁ କତିପୟ ମହାପ୍ରାଣ ବ୍ୟକ୍ତି ନବଯୁଗର ଆଲୋକ-ବର୍ତ୍ତିକା ଧାରଣ କରି ଉତ୍କଳର ଅଜ୍ଞାନ-ଅନ୍ଧକାର ବିନାଶପୂର୍ବକ ନବଯୁଗର ପ୍ରବର୍ତ୍ତନା ଆଣିଅଛନ୍ତି, ସ୍ୱର୍ଗତ ସାର୍ ବାସୁଦେବ ସେମାନଙ୍କ ମଧ୍ୟରେ ଅଗ୍ରଣୀ ଅଟନ୍ତି । ତାଙ୍କଠାରେ ଯୁଗ ପ୍ରବର୍ତ୍ତନୋଚିତ ତେଜ, ଓଜଃ ଓ ସାହସ ପୂରି ରହିଥିଲା । ସୁତରାଂ ପୃଥିବୀର ଯେ କୌଣସି ଅଂଶରେ ଜନ୍ମଲାଭ କରିଥିଲେହେଁ ସେ ସେଠାରେ ନିଜର ଲୋକୋତ୍ତର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିପାରି ଥାଆନ୍ତେ । ତାଙ୍କୁ ଲାଭ କରି ବାମଣ୍ଡା ତଥା ସମଗ୍ର ଉତ୍କଳ ଧନ୍ୟ ହୋଇଅଛି ।

ସେ ମହାତ୍ମା ସନ ୧୨୫୮ ସାଲର ବୈଶାଖ ମାସ ୨୮ ଦିନ ( ଇଂରାଜୀ ତା ୧୬ । ୫ । ୧୮୫୦ ରିଖ) ବାମଣ୍ଡା ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । କୁମାର ବାସୁଦେବଙ୍କର ଜନକ ବାମଣ୍ଡା ରାଜା ବ୍ରଜସୁନ୍ଦର

କ

ଦେବଙ୍କର ସହୋଦର, ବଡ଼କୁମାର ହରିହର ଦେବ । ରାଜା ବ୍ରଜସୁନ୍ଦର ଦେବଙ୍କ ପରେ ଭାବୀ ରାଜପଦରେ ଅଭିଷିକ୍ତ ହେବା ଉପଯୋଗୀ ପୁତ୍ର-ସନ୍ତାନ ନ ଥିବାରୁ ରାଜା ବ୍ରଜସୁନ୍ଦର ବଡ଼କୁମାର ହରିହର ଦେବଙ୍କ ପୁତ୍ର, ରାଜପରିବାରର ଜ୍ୟେଷ୍ଠ କୁମାର ବାସୁଦେବଙ୍କୁ ଭାବୀ ଉତ୍ତରାଧିକାରୀ ରୂପେ ଗ୍ରହଣ କଲେ । ସେତେବେଳେ ଟିକାପୁତ୍ର ବାସୁଦେବଙ୍କ ବୟଃକ୍ରମ ପାଞ୍ଚବର୍ଷ ମାତ୍ର । ସେ ସୁସ୍ଥ ଓ ସବଳ ଶରୀର, ସ୍ଫୂର୍ତ୍ତିସମ୍ପନ୍ନ, ପ୍ରଫୁଲ୍ଲମନ ଓ ଚଞ୍ଚଳପ୍ରକୃତିର ବାଳକ ଥିଲେ । ଶାନ୍ତଭାବେ ବସି ରହିବାର ପାତ୍ର ସେ ନ ଥିଲେ । ନବମ ବର୍ଷରେ ରାଜକୁମାରଙ୍କର ଉପନୟନ ସଂସ୍କାର ସମ୍ପନ୍ନ ହେଲା । କୁମାର ବାସୁଦେବ ଯେ ଉତ୍ତର କାଳରେ ଅସାମାନ୍ୟ ପ୍ରତିଭାର ପରିଚୟ ଦେବେ ତାହାର ଆଭାସ ସେହି ସମୟରୁ ହିଁ ପରିଲକ୍ଷିତ ହୋଇଥିଲା ।

ଉପନୟନ ସଂସ୍କାରର ସଙ୍ଗେ ସଙ୍ଗେ କୁମାର ବାସୁଦେବଙ୍କର ଉଚ୍ଚ ଓଡ଼ିଆ ଓ ସଂସ୍କୃତ ଶିକ୍ଷାର ଭାର ଆନନ୍ଦ ବ୍ରହ୍ମା, ପୁରୁଷୋତ୍ତମ ତର୍କାଳଙ୍କାର ଓ ଭୁବନେଶ୍ୱର ବଡ଼ପଣ୍ଡା ମହାଶୟ ମାନେ ନେଇଥିଲେ । ତାଙ୍କଠାରୁ ରାଜକୁମାର ଆଗ୍ରହ ଓ ଭକ୍ତି ସହକାରେ କାବ୍ୟ, ନାଟକ, ଅଳଙ୍କାର, ନ୍ୟାୟ, ବେଦ, ବେଦାନ୍ତ, ଭାଗବତ ପ୍ରଭୃତି ସମସ୍ତ ଶାସ୍ତ୍ର ଅଧ୍ୟୟନ କରିଥିଲେ । ପରେ ସ୍ୱକୀୟ ଯତ୍ନରେ ଏବଂ ଗୁରୁଙ୍କ ସାହାଯ୍ୟରେ ମନୁ, ପରାଶର, ଦାୟଭାଗ, ମିତାକ୍ଷରା ଓ ଶୁକ୍ରନୀତି ଇତ୍ୟାଦି ଧର୍ମଶାସ୍ତ୍ର, ସମାଜନୀତି, ରାଜନୀତି ତଥା ରାଜ୍ୟପାଳନ ପଦ୍ଧତିରେ ଅସାଧାରଣ ଅଧିକାର ଲାଭ କରିଥିଲେ । ତାଙ୍କଠାରେ ଶିଷ୍ୟପ୍ରକୃତିର ନିତ୍ୟବର୍ତ୍ତିମାନତା ଥିଲା । ପରବର୍ତ୍ତୀ କାଳରେ ରାଜନୀତି ଓ ରାଜକାର୍ଯ୍ୟ ପରିଚାଳନାରେ ସେ ଅସାଧାରଣ ବିଦ୍ୟାବୁଦ୍ଧି, କର୍ମପଟୁତା ଏବଂ ସାଧାରଣ ଜ୍ଞାନର ଭୂୟସୀ ପରିଚୟ ପ୍ରଦାନ କଲେହେଁ ତାହାର ଅନ୍ତରାଳରେ ତାଙ୍କର ବାଲ୍ୟସୁଲଭ ଶିକ୍ଷାଲୋଲୁପତାର ପରିଚୟ ମିଳୁଥିଲା । ସେହି ସମୟରେ ଏ ପ୍ରଦେଶରେ ଇଂରାଜୀ ଶିକ୍ଷାର ପ୍ରୟୋଜନୀୟତା ଆଦୌ ଅନୁଭୂତ ହୋଇ ନ ଥିଲା । ସୁତରାଂ କୁମାର ବାସୁଦେବ ଇଂରାଜୀ ଶିକ୍ଷା ଲାଭ କରିବାର ସୁଯୋଗ ପାଇ ନ ଥିଲେ । କିନ୍ତୁ ତାଙ୍କର ଅପରିସୀମ ଦେଶପର୍ଯ୍ୟଟନରେ ସେ ସମସ୍ତ ପ୍ରକାରର ଅନୁଷ୍ଠାନ ପୁଙ୍ଖାନୁପୁଙ୍ଖ ରୂପେ ପରିଦର୍ଶନ ଦ୍ୱାରା ଜ୍ଞାନ ଲାଭ କରି ନିଜର ସହଜାତ ପ୍ରତିଭା ବଳରେ ବାମଣ୍ଡାରେ ଯେଉଁସବୁ ଅଭିନବ

ଆଧୁନିକ ପ୍ରଣାଳୀର ସଂସ୍କାରମାନ ପ୍ରବର୍ତ୍ତିତ କରିଥିଲେ, ତହିଁରୁ ସେ ଅଭାବ ସମ୍ପୂର୍ଣ୍ଣଭାବେ ମୋଚନ ହୋଇଥିବା ସହଜରେ ଅନୁମେୟ ।

## ସିଂହାସନ ଆରୋହଣ

ବାମଣ୍ଡାର ରାଜା ବ୍ରଜସୁନ୍ଦର ଦେବ ୧୮୬୯ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ । ସେତେବେଳେ ଟିକାଯୁବ ବାସୁଦେବଙ୍କ ବୟଃକ୍ରମ ଅଷ୍ଟାଦଶ । "ରାଜା ବାସୁଦେବ ସୁଡଳଦେବ" ନାମରେ ଅଭିହିତ ହୋଇ ସେ ବାମଣ୍ଡାର ରାଜସିଂହାସନ ଆରୋହଣ ଓ ରାଜ୍ୟଭାର ଗ୍ରହଣ କଲେ । ପ୍ରାପ୍ତବୟସ୍କ ନ ହେବା ପର୍ଯ୍ୟନ୍ତ ପିତା, ବଡ଼କୁମାର ହରିହର ଦେବଙ୍କ ତତ୍ତ୍ୱାବଧାନ ଓ ପରାମର୍ଶରେ ରାଜକାର୍ଯ୍ୟ ପରିଚାଳନା ନିମନ୍ତେ ତଦାନିନ୍ତନ ପଲିଟିକାଲ ଏଜେଣ୍ଟ କର୍ଣ୍ଣେଲ ଗୁଇ ଆଦେଶ ପ୍ରଦାନ କଲେ । ମାତ୍ର ଏତଦ୍‌ଦ୍ୱାରା, ଯୁବକ ରାଜା ବାସୁଦେବ ପ୍ରଜା-ମଣ୍ଡଳର ପ୍ରୀତିଭାଜନ ହେବାକୁ ବ୍ୟଗ୍ର, ଅଥଚ ବଡ଼କୁମାର ହରିହର ଦେବ ଅଭିଭାବକରୂପେ ପ୍ରତିପଦରେ ବିପରୀତ ଆଚରଣ କରୁଥିବାରୁ ପିତା ପୁତ୍ରଙ୍କ ମଧ୍ୟରେ ପଦେ ପଦେ ମତଭେଦ ହେବାକୁ ଲାଗିଲା । ଫଳରେ ବଡ଼କୁମାର ଅଭିମାନ କରି ସ୍ଥାନାନ୍ତରିତ ହେଲେ ।

ରାଜା ବାସୁଦେବ ବାମଣ୍ଡାର ରାଜ୍ୟଶାସନର ସମସ୍ତ ଦାୟିତ୍ୱ ସ୍ୱହସ୍ତରେ ଗ୍ରହଣ କଲାବେଳକୁ ବାମଣ୍ଡା ମଧ୍ୟଯୁଗର ନିବିଡ଼ ଅନ୍ଧକାରରେ ଲୁଚି ରହି "ଅଖୋଜ ବାମଣ୍ଡା" ନାମରେ ହିଁ ବିଦିତ ଥିଲା । ରାଜା ବ୍ରଜସୁନ୍ଦର ସୁଶାସକ ଥିଲେ ସୁଦ୍ଧା ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞାର ଅଧିକାରୀ ନ ଥିଲେ । କିନ୍ତୁ ବାସୁଦେବ ସୁଡଳଦେବ ଲୋକୋତ୍ତର ପ୍ରତିଭା ନେଇ ଜନ୍ମଗ୍ରହଣ କରିଥିଲେ । ରାଜଦଣ୍ଡ ଗ୍ରହଣ କଲାକ୍ଷଣି ସେ ପ୍ରତିଭା ଆତ୍ମବିକାଶ ନିମନ୍ତେ କ୍ଷେତ୍ର ଲାଭକରି ପ୍ରକଟିତ ହୋଇ ଉଠିଲା । ରାଜ୍ୟଭାର ଗ୍ରହଣର ସଙ୍ଗେ ସଙ୍ଗେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନରେ ମନ ନିବେଶ କରିବା ଦ୍ୱାରା ଅପୂର୍ବ ପରିବର୍ତ୍ତନର ଖରସ୍ରୋତ ପ୍ରବାହିତ ହେବାକୁ ଲାଗିଲା । ଇତିପୂର୍ବେ ରାଜସିରସ୍ତା ଶୃଙ୍ଖଳ ଭାବରେ ରଖାଯାଉ ନ ଥିଲା । ଯେଉଁସବୁ କାଗଜପତ୍ର ରଖାଯାଉଥିଲା ତାହା ତାଳପତ୍ରରେ ଲିଖିତ ହେଉଥିଲା । ଟ ୧୫୯ ରୁ ଅଧିକ ବେତନଭୋଗୀ କର୍ମଚାରୀ ନ ଥିଲେ । ତେଣୁ ରାଜା ବାସୁଦେବ କର୍ମଚାରୀମାନଙ୍କୁ ଶିକ୍ଷାଦାନ

କରାଇ କାର୍ଯ୍ୟ ଅଧିକାରର ଗୁରୁତ୍ୱାନୁରୂପ ସେମାନଙ୍କ ବେତନର ଉଚିତ ସ୍ତର ନିୟନ୍ତ୍ରଣ କଲେ ।

ସର୍ବାଗ୍ରେ ଜମିର ଉତ୍କର୍ଷ ଏବଂ ଯହିଁରେ କୃଷୀମାନଙ୍କର ଅବସ୍ଥା ଉନ୍ନତ ହେବ ଓ ପ୍ରଜାର ଶ୍ରୀବୃଦ୍ଧି ସାଧିତ ହେବ ତହିଁରେ ମନୋନିବେଶ କଲେ । କାର୍ଯ୍ୟ କର୍ମରେ ଶୃଙ୍ଖଳା, ବିଧିବ୍ୟବସ୍ଥା ଓ ନାନା ବିଷୟକ କର୍ତ୍ତବ୍ୟ ଅସଙ୍ଗତ ପରିଶ୍ରମ ସହ୍ୟ କରି ନିଜେ ନିତ୍ୟ ପରିଚାଳନା ଓ ପରିଦର୍ଶନ କରି ସ୍ୱତନ୍ତ୍ର ସ୍ୱତନ୍ତ୍ର ବିଭାଗ ପ୍ରତିଷ୍ଠା କଲେ । ଆୟବ୍ୟୟର ବଜେଟ୍ ପ୍ରସ୍ତୁତ କରାଇ ତଦନୁଯାୟୀ ବ୍ୟୟ ନିୟନ୍ତ୍ରଣ କଲେ । କୃଷି-ଉପଯୋଗୀ ସମଗ୍ର ଜମି ପ୍ରଧାନ ତିନଭାଗରେ ବିଭକ୍ତ କରି କିସମ୍‌ୱାରି ରାଜକର ନିର୍ଦ୍ଧାରଣ କଲେ । ଆବାଦୀ ଜମି ସମସ୍ତ ନୂତନ ବନ୍ଦୋବସ୍ତ କରି ଜମାଜରିପ୍ ଓ ରାଜସ୍ୱ ବିଭାଗ (Land Settlement and Revenue Department) ସୃଷ୍ଟି କଲେ । କ୍ରମେ ପୁଲିଶ, ଜଙ୍ଗଲ, ଶାସନ ଓ ବିଚାର ବିଭାଗ ସୁଶୃଙ୍ଖଳ ଭାବରେ ପ୍ରତିଷ୍ଠିତ ହେଲା । ରାଜା ବାସୁଦେବ ରାଜସିଂହାସନ ଆରୋହଣ କଲାବେଳେ ବାମଣ୍ଡା ରାଜ୍ୟର ଆୟ ଛଅ ହଜାର ଟଙ୍କା ଥିଲା । କିନ୍ତୁ ୧୮୭୫ ଖ୍ରୀଷ୍ଟାବ୍ଦ ବେଳକୁ ବାସୁଦେବଙ୍କ ଅଧ୍ୟବସାୟ ଫଳରେ ରାଜକୋଷରେ ଅଠର ହଜାର ଟଙ୍କା ଆୟ ହୋଇଥିଲା । ପରବର୍ତ୍ତୀ କାଳରେ ବାମଣ୍ଡାର ଯେଉଁ ଭୂୟସୀ ଉନ୍ନତି ସାଧିତ ହୋଇଥିଲା ଏହାହିଁ ତହିଁର ଅଗ୍ରସୂଚନା କହିବାକୁ ହେବ । ଏହି ପ୍ରକାର ନୂତନ ଗଠନ ସନ୍ଦର୍ଶନରେ କର୍ମଚୁରି ଓ ସାଧାରଣ ପ୍ରଜାମଣ୍ଡଳୀ ମଧ୍ୟରେ ନବଜୀବନ ଜାଗରଣର ଲକ୍ଷଣ ଦେଖାଦେବାକୁ ଲାଗିଲା ଏବଂ ବାମଣ୍ଡାର ଲୋକେ ବାସୁଦେବଙ୍କ କାର୍ଯ୍ୟକଳାପକୁ ଅତ୍ୟନ୍ତ ଆଶ୍ୱସ୍ତ ହୃଦୟରେ ଶୁଭଚିନ୍ତନ ଓ ଅନୁଧ୍ୟାନ କରିବାକୁ ଲାଗିଲେ ।

## ପାଣିଗ୍ରହଣ

ରାଜା ବ୍ରଜସୁନ୍ଦରଙ୍କ ନିର୍ଦ୍ଦେଶାନୁସାରେ ୧୮୭୧ ସାଲରେ ବାସୁଦେବଙ୍କ ଶୁଭପରିଣୟ କଳାହାଣ୍ଡି ମହାରାଜା ଉଦିତପ୍ରତାପ ଦେବଙ୍କ ସର୍ବସୁଲକ୍ଷଣୀ ମଧ୍ୟମା କନ୍ୟା ଶ୍ରୀମତୀ ଗିରିରାଜକୁମାରୀଙ୍କ ସହିତ ସମ୍ପନ୍ନ ହୋଇଥିଲା । ମହାରାଜକୁମାରୀ ରୂପରେ ଲକ୍ଷ୍ମୀ ଓ ଗୁଣରେ ସରସ୍ୱତୀ ରୂପିଣୀ ଥିଲେ ଏବଂ ତାଙ୍କ ପାଣି ଗ୍ରହଣ କରି ରାଜା ବାସୁଦେବ ନିଜକୁ

ଭାଗ୍ୟବାନ ମନେ କରୁଥିଲେ । ରାଣୀ ଗିରିରାଜକୁମାରୀ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ପ୍ରବୀଣା ଥିଲେ; ଏବଂ ଶିକ୍ଷାର ଗୁଣରୁ ତାଙ୍କର ସୁକଣ୍ଠରୁ ସଙ୍ଗୀତର ଅମୃତଧାରା ପ୍ରବାହିତ ହେଉଥିଲା । ତାଙ୍କର ସଂସ୍କୃତ ସାହିତ୍ୟରେ ଏତେଦୂର ପ୍ରବେଶଲାଭ ଘଟିଥିଲା ଯେ ସେ ସଂସ୍କୃତ ଶ୍ଳୋକ ରଚନା କରି ସଂସ୍କୃତାନୁରାଗୀ ବାସୁଦେବଙ୍କୁ ଶୁଣାଇଁ ଚିତ୍ତବିନୋଦନ କରୁଥିଲେ । ତାଙ୍କର ତାନଲୟ-ସୁସଙ୍ଗତ ସଙ୍ଗୀତ-ଲହରୀ ଏତେ ମଧୁର ଥିଲା ଯେ, କବିପ୍ରାଣ ବାସୁଦେବ ତହିଁରେ ବିମୁଗ୍ଧ ହୋଇ ଅପାର ସୁଖ ଲାଭ କରୁଥିଲେ ।

•

ବହୁବର୍ଷାଧିକ କାଳ ପରେ ୧୮୭୨ ମଇ ମାସ ୩ ତାରିଖରେ ବାମଣ୍ଡାର ରାଜସଂସାରରେ ଟିକାୟତ୍ ସଚ୍ଚିଦାନନ୍ଦଙ୍କ ଜନ୍ମଗ୍ରହଣ ହେଲା । ରାଜକୁମାରଙ୍କ ଜନ୍ମ ଉପଲକ୍ଷରେ ଯେତେବେଳେ ସମଗ୍ରରାଜ୍ୟ ଆନନ୍ଦରେ ଉତ୍‌ଫୁଲ୍ଲ, ରାଣୀ ସୂତିକାଗାରରେ ଥାଇ ଜାଣି ପାରିଲେ ଯେ, ରାଜ୍ୟର ଭାବୀ ଉତ୍ତରାଧିକାରୀଙ୍କ ଶୁଭାଗମନ ଉପଲକ୍ଷେ ରାଜକର୍ମଚାରୀ ଓ ସମଗ୍ର ପ୍ରଜାମଣ୍ଡଳୀ ରାଜାଙ୍କୁ ପ୍ରଚୁର ଅର୍ଥ ଟୀକା କରିବାର ଚିରାଚରିତ ପ୍ରଥା ବର୍ତ୍ତମାନ ଅଛି । ତହୁଁ ନବୀନା ରାଣୀ ଅନୁରାଗୀ ପତିଙ୍କୁ ସାନୁନୟ ଅନୁରୋଧ କରି ଏହି ଦୀର୍ଘକାଳ-ପ୍ରଚଳିତ କୁପ୍ରଥା ରହିତ କରାଇ ଦେଇଥିଲେ । ଏବଂବିଧ ଅଶେଷ ସୁଗୁଣର ଅଧିକାରିଣୀ ହୋଇ ସେ ସ୍ୱାମୀଙ୍କ ହୃଦୟରେ ଅଖଣ୍ଡ ଆଧିପତ୍ୟ ସ୍ଥାପନ କରିଥିଲେ ।

ଟିକାୟତ୍ ସଚ୍ଚିଦାନନ୍ଦଙ୍କୁ ବର୍ଷେ କେତେ ମାସ ହେଲାବେଳକୁ ବାସୁଦେବଙ୍କ ସହଧର୍ମିଣୀ ବାମଣ୍ଡା ରାଜସଂସାରକୁ ଶୋକ-ସାଗରରେ ନିମଜ୍ଜିତ କରି ଏବଂ ଅନୁରାଗୀ ପତିଙ୍କ ହୃଦୟକୁ ଶତଧା ଚୂର୍ଣ୍ଣ କରି ସ୍ୱର୍ଗାରୋହଣ କଲେ । ଦୁଗ୍ଧପୋଷ୍ୟ ଶିଶୁ ସଚ୍ଚିଦାନନ୍ଦଙ୍କ ଜୀବନ-ରକ୍ଷା ନିମନ୍ତେ ବ୍ୟାକୁଳ ହୋଇ ରାଜା ବାସୁଦେବ ଶିଶୁର ଲାଳନ ପାଳନ ଭାର ରାଜମାତାଙ୍କ ଉପରେ ନ୍ୟସ୍ତ କଲେ । ତାଙ୍କର ଐକାନ୍ତିକ ସ୍ନେହର ଆଶ୍ରୟରେ କୁମାରଙ୍କ ଶୈଶବ ଜୀବନ ଧୀରେ ଧୀରେ ଅତିବାହିତ ହେବାକୁ ଲାଗିଲା ।

ଯେତେବେଳେ ରାଜା ବାସୁଦେବ ବୁଝିପାରିଲେ ଯେ, ଶିଶୁର ମାତୃବିୟୋଗ ନିବନ୍ଧନ ଜୀବନର ଆଉ ଆଶଙ୍କା ନାହିଁ, ସେତେବେଳେ

ତାଙ୍କର ପତ୍ନୀବିୟୋଗ ଶୋକ ଯାହା କି ଏତେ ଦିନ ପ୍ରଚ୍ଛନ୍ନ ଭାବେ ଲୁକ୍କାୟିତ ହୋଇ ରହିଥିଲା, ତାହା ସଜାଗ ଓ ଘନୀଭୂତ ହୋଇ ଉଠିଲା । ତାଙ୍କର ଜୀବନଯାତ୍ରା ନିର୍ବାହ ଓ ରାଜକାର୍ଯ୍ୟ ପରିଚାଳନା ଏକାନ୍ତ ଅସମ୍ଭବ ହୋଇ ଉଠିଲା । କ୍ରମେ କାର୍ଯ୍ୟରେ ଅନାସ୍ଥା ଓ ବୈରାଗ୍ୟମାର୍ଗରେ ସ୍ପୃହା ଦିନକୁ ଦିନ ବଢ଼ିବାକୁ ଲାଗିଲା । ସୁତରାଂ ସେ ଭଗ୍ନହୃଦୟ ଓ ଭଗ୍ନସ୍ୱାସ୍ଥ୍ୟ ନେଇ ଚିତ୍ତର ଗତି ପରିବର୍ତ୍ତନ ନିମନ୍ତେ ତୀର୍ଥ ପର୍ଯ୍ୟଟନ ଓ ଦେଶ ଭ୍ରମଣ ଯାତ୍ରା ସ୍ଥିର କଲେ ।

ଟିକାୟତ ସଚ୍ଚିଦାନନ୍ଦଙ୍କୁ ପ୍ରବୀଣା ରାଜମାତାଙ୍କ ପାଖରେ ରଖି ଓ ରାଜ୍ୟଭାର ପ୍ରଧାନ କର୍ମଚାରୀଙ୍କ ଉପରେ ନ୍ୟସ୍ତ କରି ରାଜା ବାସୁଦେବ ନିଜ ରାଜଧାନୀ ଦେବଗଡ଼ରୁ ତୀର୍ଥପର୍ଯ୍ୟଟନ ଓ ଦେଶଭ୍ରମଣ ଉଦ୍ଦେଶ୍ୟରେ ବହିର୍ଗତ ହେଲେ । ସମ୍ବଲପୁରରେ ପଲିଟିକାଲ୍ ଏଜେଣ୍ଟ କର୍ଣ୍ଣେଲ ବୁଇଙ୍କ ସଙ୍ଗେ ସାକ୍ଷାତ କରି ଓ ଅନୁକୂଳ ପରାମର୍ଶ ଲାଭକରି ନୌକାରେ କଟକ ଯାତ୍ରା କଲେ । ସେହି ସମୟରେ ଗୋଟିଏ ରାଜ୍ୟ ସଙ୍ଗରେ ଅନ୍ୟ ରାଜ୍ୟର ବୈବାହିକ ବା ଅନ୍ୟ କୌଣସି ଘନିଷ୍ଠ ସମ୍ପର୍କ ଥିଲେ ସୁଦ୍ଧା, ଗମନାଗମନର ସୁଗମ ପଥ ନ ଥିବାରୁ ହସ୍ତୀ-ପୃଷ୍ଠରେ ବା ସମ୍ଭବ ହେଲେ ନଦୀ-ପଥରେ ଯାତାୟତ କରିବା କେବଳ ପନ୍ଥା ଥିଲା । ଅତଏବ ରାଜାଙ୍କୁ ମହାନଦୀର ପଥ ଦେଇ କଟକ ଯାତ୍ରା କରିବାକୁ ପଡ଼ିଥିଲା ।

ରାଜା ସୁଦଳଦେବ ଅସୀମ ବିଦ୍ୱତ୍ତା ଓ ଅସାଧାରଣ ପାଣ୍ଡିତ୍ୟ ଅର୍ଜ୍ଜନ କରି ସୁପ୍ରତିଷ୍ଠିତ ହେଲେହେଁ ତାଙ୍କ ହୃଦୟ କବି-ହୃଦୟ ଥିଲା । ସେହି ହୃଦୟରେ ମହାନଦୀର ପ୍ରାକୃତିକ ଶୋଭା ଓ ସୌନ୍ଦର୍ଯ୍ୟର ଛାୟା ପତିତ ହୋଇ ତାଙ୍କର ସୌନ୍ଦର୍ଯ୍ୟସମ୍ଭୋଗ ତୃଷ୍ଣା ବଳବତୀ ହୋଇ ଉଠିଲା । ଏହାର ଉଭୟ ତୀର ଅନନୁଭୂତପୂର୍ବ ଶୋଭା ବିସ୍ତାର କରି ରାଜାଙ୍କ କବି ହୃଦୟରେ ଅମୃତ ସେଚନ କରିବାକୁ ଲାଗିଲା । ସେହି ଭାବତରଙ୍ଗ ରାଜା ବାସୁଦେବଙ୍କ ହୃଦୟ ସ୍ପର୍ଶ କରି "ଚିତ୍ରୋତ୍ପଳା" ଗ୍ରନ୍ଥ ରୂପେ ପ୍ରକଟିତ ହୋଇଥିଲା । ଏହି "ଚିତ୍ରୋତ୍ପଳା" ଅତି କ୍ଷୁଦ୍ର-କଳେବର ହେଲେହେଁ, କବି ବାସୁଦେବ ଚିତ୍ରୋତ୍ପଳାର ମହାମୂଲ୍ୟ ରତ୍ନ ଚୟନ କରି ଅଭିନବ ମାଳ୍ୟ ରଚନା କରି ମାତୃଭାଷାର ଅଳଙ୍କାର-ସମ୍ପତ୍ତି ବୃଦ୍ଧି କରି ଯାଇଅଛନ୍ତି । ଗ୍ରନ୍ଥରେ ବିଧାତାର ବିଚିତ୍ର ଲୀଳା ପ୍ରକଟିତ ହୋଇ ଭାବ-ସମ୍ପଦ ଯେପରି ପ୍ରଚୁର, ଛନ୍ଦର ବହୁଳତା ଓ ଅଳଙ୍କାରର ମଧୁର ନିକ୍ୱଣ

ମଧ୍ୟ ସେହିପରି ମନୋହର । ପ୍ରକୃତିର ଶୋଭା ବର୍ଣ୍ଣନାରେ ଏତାଦୃଶ ନିପୁଣତା ସହକାରେ ସର୍ବବିଧ ଅଳଙ୍କାର ପ୍ରୟୋଗ ସାମାନ୍ୟ ଶକ୍ତିର କାର୍ଯ୍ୟ ନୁହେଁ । ଓଡ଼ିଶାର ପଣ୍ଡିତ କବିବର ରାୟ ରାଧାନାଥ ରାୟ ବାହାଦୁର ଏହି କ୍ଷୁଦ୍ର ଗ୍ରନ୍ଥଟିକୁ ଓଡ଼ିଶାର ସାହିତ୍ୟ-ସଂସାରରେ ଅମୂଲ୍ୟ ରତ୍ନ ବୋଲି ଅଭିମତ ବ୍ୟକ୍ତ କରି ଯାଇଅଛନ୍ତି ।

କଟକରେ ପହଞ୍ଚି ସେ ଜୋବ୍ରା ନାମକ ସ୍ଥାନରେ ଅବସ୍ଥାନକରି 'ଉତ୍କଳ ଦୀପିକା'ର ସମ୍ପାଦକ ଗୌରୀଶଙ୍କର ରାୟଙ୍କ ସାହାଯ୍ୟରେ ନାନା ସ୍ଥାନ ପରିଦର୍ଶନ କରି "କଟକ ପ୍ରିଣ୍ଟିଂକଂପାନୀ" ଓ "ମିଶନ ପ୍ରେସ"ର କାର୍ଯ୍ୟପଦ୍ଧତି, ପ୍ରତିଷ୍ଠା ଓ ଉପକାରିତା ସମ୍ୟକ୍‌ରୂପେ ହୃଦୟଙ୍ଗମ କରି ନିଜର ରାଜଧାନୀରେ ଅନୁରୂପ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ସଙ୍କଳ୍ପ ମନେ ମନେ ପୋଷଣ କଲେ । କଟକରେ କମିଶନର ଅଫିସ୍, ଜଜ୍ ମାଜିଷ୍ଟ୍ରେଟଙ୍କ ଅଦାଲତ ଏପରି କି, ଖ୍ରୀଷ୍ଟୀୟ ସମ୍ପ୍ରଦାୟଙ୍କ ଭଜନାଳୟ ( Church ) ପର୍ଯ୍ୟଦର୍ଶନ କରି ଚାନ୍ଦବାଲି ଦେଇ କଲିକତା ଯାତ୍ରା କଲେ । ସେତେବେଳେ ଚାନ୍ଦବାଲିରୁ କଲିକତାକୁ ସପ୍ତାହରେ ଦୁଇଥର ଜାହାଜ ଯାତାୟାତ କରୁଥିଲା ।

କଲିକତାରେ ରାଜା ସୁତଳଦେବ ସର୍ବାଗ୍ରଗଣ୍ୟ ସ୍ୱର୍ଗୀୟ ବିଦ୍ୟାସାଗର ମହାଶୟଙ୍କ ସଙ୍ଗେ ସାକ୍ଷାତ୍ କଲେ । ରାଜା ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ରରେ ବିଶେଷ ଭାବେ ବ୍ୟୁତ୍ପନ୍ନ ଥିବାରୁ ବିଦ୍ୟାସାଗରଙ୍କ ସଦନରେ ଅତ୍ୟନ୍ତ ପ୍ରତିପତ୍ତିଭାଜନ ହୋଇଥିଲେ । ଉଭୟଙ୍କ ମଧ୍ୟରେ ଆତ୍ମୀୟତାର ସୂତ୍ରପାତ ହୋଇ ତାହା ଗାଢ଼ରୁ ଗାଢ଼ତର ଓ ଦୀର୍ଘସ୍ଥାୟୀ ହୋଇଥିଲା ।

ରାଜା ବାସୁଦେବ ଅତ୍ୟନ୍ତ ଅନୁସନ୍ଧିତ୍ସୁ ଥିଲେ । ସେ ସର୍ବବିଧ ବ୍ୟକ୍ତିଙ୍କ ନିକଟରୁ ନାନାବିଧ ସମ୍ବାଦ ଗ୍ରହଣ କରୁଥିଲେ ଏବଂ ତନ୍ମଧ୍ୟରୁ କେବଳ ଗ୍ରହଣଯୋଗ୍ୟ ବିଷୟମାନ ନିଜର ହୃଦୟରେ ରଖି ଅନ୍ୟସବୁ ବର୍ଜନ କରୁଥିଲେ । ସେ ଯେଉଁଠାରେ ଯାହା ଦେଖୁଥିଲେ ତାର ସମ୍ପୂର୍ଣ୍ଣ ତଥ୍ୟ ଗ୍ରହଣ କରି ତାହା ତାଙ୍କ ରାଜ୍ୟରେ ପ୍ରତିଷ୍ଠିତ କରାଇବା ଲାଗି ସର୍ବଦା ବ୍ୟଗ୍ର ଥିଲେ ।

କଲକତାରେ ସର୍ବାଗ୍ରେ ସେ କାଳୀଘାଟରେ ଦେବୀ ଦର୍ଶନାନ୍ତେ ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ଚର୍ଚ୍ଚାର ପ୍ରଧାନ କେନ୍ଦ୍ର ସଂସ୍କୃତକଲେଜ, ହିନ୍ଦୁ ଓ ହେୟାର ସ୍କୁଲ, ପ୍ରେସିଡେନ୍‌ସି କଲେଜ, ରୟେଲ୍ ଏସିୟାଟିକ୍ ସୋସାଇଟିର ସଭାଗୃହ, ଚିଡ଼ିୟାଖାନା, ଯାଦୁଘର, ବୋଟାନିକାଲ ଉଦ୍ୟାନ ଇତ୍ୟାଦି ପରିଦର୍ଶନ କରି ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିଥିଲେ । ତନ୍ମଧ୍ୟରୁ ଶିକ୍ଷା ଅନୁଷ୍ଠାନ ଗୁଡ଼ିକ ଦେଖି ନିଜ ରାଜ୍ୟରେ ଶିକ୍ଷା ପ୍ରସାରର ସୁବ୍ୟବସ୍ଥା କରିବାର ଆକାଂକ୍ଷା ତାଙ୍କ ହୃଦୟରେ ପ୍ରବଳ ହୋଇ ଉଠିଥିଲା । ଏସିୟାଟିକ୍ ସୋସାଇଟିରେ ପୂର୍ବବର୍ତ୍ତୀ ଶତାଧିକ ବର୍ଷର ସଂଗୃହୀତ ବିବିଧ ତତ୍ତ୍ୱର ସମ୍ବାଦ ଜ୍ଞାତ ହୋଇ ଏବଂ ଯାଦୁଘରେ ଭୂତତ୍ତ୍ୱ, ପ୍ରାଣୀତତ୍ତ୍ୱ ଇତ୍ୟାଦି ଜ୍ଞାନ ଲାଭର ପ୍ରଚୁର ଆୟୋଜନ ଦେଖି ତାଙ୍କର ଶିକ୍ଷାଲୋଲୁପ ମନ ସେହି ସମସ୍ତ ସ୍ଥାନକୁ ବାରମ୍ବାର ଆକର୍ଷଣ କରିଥିଲା । ଉଦ୍ୟାନ ଦର୍ଶନରେ ତାଙ୍କ ମନରେ ଯେଉଁ ସ୍ଥାୟୀଭାବ ସ୍ଥାନ ପାଇଥିଲା, ତାହା କ୍ରମେ ପ୍ରସ୍ଫୁଟିତ ହୋଇ ନିଜ ରାଜଧାନୀର ସୌଷ୍ଠବ ଓ ଶ୍ରୀ ବୃଦ୍ଧି କରିଥିଲା । ଏହାଛଡ଼ା ଶ୍ରୀରାମପୁରସ୍ଥ ଷ୍ଟୋଟକଳ, କାଗଜକଳ ଓ ଫ୍ଲାଏସାଟଲ୍ ( fly shuttle ) ଡନ୍ତଦ୍ୱାରା ବସ୍ତ୍ରବୟନ ଦର୍ଶନ କରି ଅଳ୍ପ ଧନରେ କାର୍ଯ୍ୟ ସୁସିଦ୍ଧି ଲାଭର ଉପାୟ ଜାଣିବାକୁ ଚେଷ୍ଟା କରିଥିଲେ । ଏତଦ୍‌ଦ୍ୱାରା ତାଙ୍କର ପ୍ରଜାବତ୍ସଳ ହୃଦୟ ପ୍ରଜାଙ୍କ କଲ୍ୟାଣ ନିମନ୍ତେ ସହଜ ଓ ସରଳ ରୀତିରେ ବାଣିଜ୍ୟ ବ୍ୟବସାୟ ଅବଲମ୍ବନର ପନ୍ଥା ପ୍ରାପ୍ତ ହୋଇଥିଲା । ଏହାରି ଫଳରେ ପରବର୍ତ୍ତୀ-କାଳରେ ନିଜ ରାଜ୍ୟରେ କପଡ଼ା କଳ ( Textile Mill ) ସ୍ଥାପିତ ହୋଇ ପ୍ରସାର ଲାଭ କରିଥିଲା ।

କଲକତାରୁ ଦେବଗଡ଼ର ସୌଷ୍ଠବ ବୃଦ୍ଧିର ଚିତ୍ର ହୃଦୟରେ ଅଙ୍କନ କରି ସୁତଳଦେବ କାଶୀ ଯାତ୍ରା କଲେ । ମଣିକର୍ଣ୍ଣିକା ସ୍ନାନ, ବିଶ୍ୱେଶ୍ୱର ଅନ୍ନପୂର୍ଣ୍ଣା ଦର୍ଶନ ଓ ଧର୍ମ୍ମକର୍ମ୍ମ ସମାପନ କରି କାଶୀର ମାନମନ୍ଦିର ପ୍ରତି ବିଶେଷ ଭାବେ ଆକୃଷ୍ଟ ହେଲେ ଏବଂ ନିଜ ରାଜଧାନୀରେ ବିଜ୍ଞାନାଗାର ସ୍ଥାପନ କରିବା ସଙ୍କଳ୍ପ ପୋଷଣ କଲେ । ପଥରେ ଅଯୋଧ୍ୟା (ଫୟଜାବାଦ) ରେ ଅବତରଣ କରି ତୀର୍ଥସ୍ଥାନ ଓ ରାମଚନ୍ଦ୍ର କାହାଣୀ ସଂସୃଷ୍ଟ ନାନା ବିବରଣ ପରିଜ୍ଞାତ ହୋଇ ଲକ୍ଷ୍ନୌ ଯାତ୍ରାକଲେ । ସେଠାରେ ଐତିହାସିକ ଓ ଅନ୍ୟାନ୍ୟ ଦର୍ଶନଯୋଗ୍ୟ ଦୃଶ୍ୟ ଓ ସିପାହିମାନଙ୍କ

ଗୋଳାଗୁଳିର ବର୍ଷଣ ଦ୍ୱାରା ବେଲଗାର୍ଡ଼ ଦୁର୍ଗର ବିଧ୍ୱସ୍ତ ଅବସ୍ଥା ଅବଲୋକନ କଲେ, ଅନନ୍ତର କାନପୁରରେ ଦେଶୀୟ କାର୍ପାସ ବ୍ୟବସାୟର ଶ୍ରୀବୃଦ୍ଧି ଦର୍ଶନ କରି ଦିଲ୍ଲୀରେ ପହଞ୍ଚିଲେ । ଦିଲ୍ଲୀରେ ପୌରାଣିକ, ଐତିହାସିକ ଓ ଯାବନିକ କୀର୍ତ୍ତି ସନ୍ଦର୍ଶନରେ ସ୍ୱଦେଶାନୁରାଗୀ ରାଜା ବାସୁଦେବଙ୍କ ହୃଦୟ ଯେ କିଞ୍ଚିତ୍ ଦର୍ପରେ ଉଦ୍‌ଭାସିତ ହୋଇ ନ ଥିଲା ତାହା କିଏ କହିପାରେ ! ମୋଗଲ ସମ୍ରାଟଙ୍କ ଅକ୍ଷୟ କୀର୍ତ୍ତି ତାଜମହଲ ଆଗ୍ରାରେ ଦେଖି, ମଥୁରା ଓ ବୃନ୍ଦାବନରେ ବୈଷ୍ଣବତତ୍ତ୍ୱ ଓ ମାହାତ୍ମ୍ୟ ଅବଗତ ହୋଇ, ପ୍ରୟାଗରେ ଅକ୍ଷୟ ବଟ ବୃକ୍ଷର ଦର୍ଶନ ସଙ୍ଗେ ସଙ୍ଗେ ଏହ୍ଲାବାଦର ଦୁର୍ଗରେ ଇଂରାଜ ରାଜାଙ୍କ ଅସ୍ତ୍ରାଗାର ପରିଦର୍ଶନ କରିଥିଲେ । ଗୟାତୀର୍ଥର ବିଷ୍ଣୁପାଦରେ ପିଣ୍ଡଦାନାଦି ତୀର୍ଥକର୍ମ୍ମ ସମାପନାନ୍ତେ ବୁଦ୍ଧ-ଗୟାରେ ବୁଦ୍ଧଙ୍କ ସିଦ୍ଧିଲାଭର ସ୍ଥାନ ଦେଖି ବୈଦ୍ୟନାଥରେ ଉପସ୍ଥିତ ହେଲେ । ବାବା ବୈଦ୍ୟନାଥଙ୍କ କୃପାରୁ କୁଷ୍ଠରୋଗରୁ ମୁକ୍ତ ହେବାର ବିଶ୍ୱାସଜନିତ କୁଷ୍ଠ ରୋଗୀମାନଙ୍କର ପ୍ରାବଲ୍ୟ-ଦୃଷ୍ଟେ ଯଥାସମ୍ଭବ ଅର୍ଥସାହାଯ୍ୟ ଦାନକରି, ଧର୍ମ୍ମକର୍ମ୍ମ ଓ ବ୍ରାହ୍ମଣ-ଭୋଜନାଦି ଯଥାବିଧି କାର୍ଯ୍ୟ ସମାପନ କରି ସିଂହଭୂମି ଦେଇ ସ୍ୱରାଜକୁ ପ୍ରତ୍ୟାବର୍ତ୍ତନ କଲେ । ଦେବଗଡ଼ରେ ଶୁଣିଲେ ଯେ ପିତା ହରିହର ଦେବ ଅଜ୍ଞାତବାସରେ ପୀଡ଼ିତ ଅବସ୍ଥାରେ ସମ୍ବଲପୁରରେ ଅବସ୍ଥାନ କରୁଅଛନ୍ତି । ସୁତରାଂ ଶୀଘ୍ର ସେଠାକୁ ଯାଇ ନାନାପ୍ରକାରରେ ପିତାଙ୍କ ବିରକ୍ତିର ଖରତା ଦୂରକରି, ତାଙ୍କର ନିର୍ଜ୍ଜନବାସର ପଣ ଭଙ୍ଗକରି ତାଙ୍କୁ ରାଜଧାନୀକୁ ଆନୟନ କଲେ ।

ଦେଶଭ୍ରମଣ ଓ ତୀର୍ଥପର୍ଯ୍ୟଟନ ଦ୍ୱାରା ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟଲାଭ ସଙ୍ଗେ ପ୍ରଭୂତ ଜ୍ଞାନ ସଞ୍ଚୟ କରି ରାଜା ବାସୁଦେବ ନିଜର ବିଦ୍ୟା ଓ ବୁଦ୍ଧି ବଳରେ ରାଜ୍ୟରେ ସେ ସମସ୍ତ ପ୍ରତିଷ୍ଠା କରାଇବାକୁ କାର୍ଯ୍ୟ ଆରମ୍ଭ କଲେ । ମାତ୍ର ରାଜ୍ୟର ସର୍ବାଙ୍ଗୀଣ ଶ୍ରୀବୃଦ୍ଧି ସାଧନ ବିପୁଳଅର୍ଥସାପେକ୍ଷ ହେତୁ ଉଦ୍ଦେଶ୍ୟ ସିଦ୍ଧି ପଥରେ ଅଳ୍ପେ ଅଳ୍ପେ ଅଗ୍ରସର ହେବାକୁ ଲାଗିଲେ । ନିଜ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ସେ ସର୍ବଦା ସମସ୍ତଙ୍କଠାରୁ ଓ ସମସ୍ତ ସ୍ଥାନରୁ ସୂଚନା ଖୋଜିବୁଲୁଥିବାରୁ ତାଙ୍କର ଏହି ଦୀର୍ଘକାଳବ୍ୟାପୀ ପର୍ଯ୍ୟଟନ ବାମଣ୍ଡା ପକ୍ଷରେ ବହୁ ଫଳପ୍ରସୂ ହେଲା ।

## ରାଜ୍ୟର ବିବିଧ ଉନ୍ନତି

ରାଜା ବାସୁଦେବ ବାମଣ୍ଡାକୁ ତିନଗୋଟି ତହସିଲରେ ବିଭକ୍ତ କଲେ—ଦେବଗଡ଼, କୁଚିଣ୍ଡା ଓ ବାରକୋଟ । ପ୍ରଥମୋକ୍ତ ଦୁଇଟିରେ ଗୋଟିଏ ଲେଖାଏଁ ପ୍ରଥମଶ୍ରେଣୀ ମାଜିଷ୍ଟ୍ରେଟ୍ ଓ ଅନ୍ୟାନ୍ୟ କର୍ମଚାରୀ ନିଯୁକ୍ତ କଲେ ଏବଂ ବାରକୋଟରେ ଜଣେ ଦ୍ୱିତୀୟ ଶ୍ରେଣୀର ମାଜିଷ୍ଟ୍ରେଟ୍ ଓ ସହକାରୀ କର୍ମଚାରୀ ନିଯୁକ୍ତ କଲେ । ମାଜିଷ୍ଟ୍ରେଟ୍‌ମାନେ କଲେକ୍ଟର କ୍ଷମତା ପ୍ରାପ୍ତହେଲେ ଏବଂ ସେମାନଙ୍କ ଅଧୀନରେ ତହସିଲମାନ ରଖା-ଗଲା ଏବଂ ସେମାନେ ଦେଓ୍ୱାନୀ ଫୌଜଦାରୀ ଉଭୟବିଧ ମୋକଦ୍ଦମା ବିଚାର କରି ପାରିଲେ ।

ଏତଦ୍‌ଭିନ୍ନ ଦେବଗଡ଼, କୁଚିଣ୍ଡା, ବାରକୋଟ, ନଣ୍ଡିକୂଳ, ଗୌଡ଼ପାଲି ଓ ଗୋବିନ୍ଦପୁରଠାରେ ପୁଲିଶ ଥାନା ପ୍ରତିଷ୍ଠିତ ହେଲା । ରାଜଧାନୀ ଦେବଗଡ଼ରେ—ଅପିଲ ଅଦାଲତ, ଜେଲଖାନା, ଦାତବ୍ୟ ଚିକିତ୍ସାଳୟ ( ୧୮୮୩ ) ପ୍ରତିଷ୍ଠିତ ହେଲା । ଇତିପୂର୍ବେ ଯେ ଏ ସମସ୍ତ ଅନୁଷ୍ଠାନ ଆଦୌ ନ ଥିଲା ତାହା ନୁହେଁ, ତେବେ ଯାହା କିଛି ଥିଲା ତାହା କେବଳ ନାମମାତ୍ର ଥିଲା । ଆଇନ ଅଦାଲତର ବିଚାର ଆଚାର ଅତି ସାମାନ୍ୟ ଆକାରରେ ଥିଲା ଏବଂ ରଜାଙ୍କର ବାଚନିକ ଆଦେଶରେ ସମସ୍ତ କାର୍ଯ୍ୟ ସମ୍ପନ୍ନ ହେଉଥିଲା । ରଜା ସୁଚଳଦେବଙ୍କ ରାଜ୍ୟ ପାଳନର ପଦ୍ଧତି-ଅବଲମ୍ବନ ଦର୍ଶନକରି ଇଂରେଜ ସରକାର ଅନ୍ୟାନ୍ୟ ଦେଶୀୟ ରାଜ୍ୟରେ ତାଙ୍କରି ନୂତନ ପଦ୍ଧତି ଅନୁଯାୟୀ ବିଧି ବ୍ୟବସ୍ଥାର ସୁପ୍ରତିଷ୍ଠା ନିମିତ୍ତ ବାରମ୍ବାର ଇଙ୍ଗିତ କରି ଯାଇ ଅଛନ୍ତି । ତାଙ୍କର "ସ୍ୱାଧୀନ ପ୍ରଣାଳୀର ଶାସନ ପରିଚାଳନ" କିପରି "ଉତ୍କୃଷ୍ଟ ଫଳପ୍ରଦ" ହୋଇଅଛି ତାହା ଉଲ୍ଲେଖ କରି ଇଂରାଜ ସରକାର ବାର୍ଷିକ ବିବରଣୀରେ ସାଧୁବାଦ କରିଅଛନ୍ତି । :—

"The Raja of Bamra, in this as in all branches of administration prefers his own independent method of working, and in view of the generally excellent result which he produces, there is certainly no occasion to subject those methods to any disparaging criticism."

Administration Report. 1895.

ଦେବଗଡ଼ରେ ଉଚ୍ଚ ଓ ନିମ୍ନ ଅଦାଲତ ସ୍ଥାପିତ ହେଲା । କଏଦୀମାନଙ୍କ ନିମନ୍ତେ ପୂର୍ବେ ଯାହା ମୃତ୍ତିକାନିର୍ମିତ ଓ ମୃତ୍ତିକାରପ୍ରାଚୀର ପରିବେଷ୍ଟିତ ଗୃହ ଜେଲଖାନା ଥିଲା, ତାହା ପରିବର୍ତ୍ତେ ରାଜା ବାସୁଦେବ ସୁନ୍ଦର ସ୍ୱାସ୍ଥ୍ୟକର ଇଷ୍ଟକନିର୍ମିତ କାରାନିବାସ ପ୍ରସ୍ତୁତ କରାଇଲେ । ବିଚାରାଳୟ ଓ ପୁଲିଶଗୃହ ମଧ୍ୟ ଉତ୍ତମ ଅଟ୍ଟାଳିକାରେ ପ୍ରତିଷ୍ଠିତ କରାଇ ବାମଣ୍ଡାର ରାଜଧାନୀର ସୌଷ୍ଠବ ଓ ଶୋଭା ବର୍ଦ୍ଧନ କଲେ । କ୍ରମେ କୋଚିଣ୍ଡା ଓ ବାରକୋଟରେ ମଧ୍ୟ କାର୍ଯ୍ୟାଳୟ ସବୁ ପକ୍‌କା ଅଟ୍ଟାଳିକାରେ ପରିଣତ ହେଲା । ରାଜସ୍ୱ ଆଦାୟର ସଙ୍ଗେ ସଙ୍ଗେ ଶାସନ ପଦ୍ଧତିର ଉତ୍କର୍ଷ ସାଧିତ ହେଲା । ପ୍ରତ୍ୟେକ ଦଶବର୍ଷ ପରେ ରାଜ୍ୟର ସମଗ୍ର ଜମିର ଉନ୍ନତି ଅବନତି କ୍ରମେ ନିର୍ଦ୍ଧାରିତ କରର ହ୍ରାସବୃଦ୍ଧି, ଜମିର ପରିମାଣ ଅନୁସନ୍ଧାନ ଓ ନୂତନ ଆବାଦୀ ଜମିର କର ନିର୍ଦ୍ଧାରଣ ଇତ୍ୟାଦି ବିଷୟରେ ଦୃଷ୍ଟି ରଖିବା ନିମନ୍ତେ ଜଣେ ଉଚ୍ଚ ଶ୍ରେଣୀର ସେଟଲ୍‌ମେଣ୍ଟ ଅଫିସର୍ ନିଯୁକ୍ତ ହେଲେ । ରାଜା ସୁଚଳଦେବ "ଆୟର ତୁଳନାରେ କି ରୂପ ଆଶାତୀତ ଉନ୍ନତିଶୀଳ କାର୍ଯ୍ୟ କରିଅଛନ୍ତି" ଏହା ତଦାନୀନ୍ତନ ପଲିଟିକାଲ୍ ଏଜେଣ୍ଟ ମୁକ୍ତକଣ୍ଠରେ ପ୍ରକାଶ କରି ଯାଇଅଛନ୍ତି :—

"I think him entitled to cordial recognition for the great progress, which Bamra has made under his rule. There are very few chiefs even in other parts of India, who with such small revenues have effected so much for improvement of their states."

H. H. Priest. Political Agent.

ଇତିପୂର୍ବେ ଅମାତ୍ୟ-ପରିବେଷ୍ଟିତ ରାଜସଭାକୁ "ଦରବାର" ବୋଲି ଅଭିହିତ କରା ହେଉଥିଲା ଏବଂ ଇଂରାଜ ରାଜସରକାରଙ୍କ ସହିତ ପତ୍ରାଳାପରେ ସର୍ବଦା ଏହି ଶବ୍ଦ ବ୍ୟବହୃତ ହେଉଥିଲା । ରାଜା ବାସୁଦେବ ୧୮୮୦ ଖ୍ରୀଷ୍ଟାବ୍ଦରେ ଏହି "ଦରବାର" ଶବ୍ଦକୁ ରହିତ କରି "କାଉନ୍‌ସିଲ୍" ଶବ୍ଦ ବ୍ୟବହାର କରିବା ନିମନ୍ତେ ଆଦେଶ ଦେଲେ । ଏହି କାଉନ୍‌ସିଲରେ ନଅ ଜଣ ସଭ୍ୟ ଥିଲେ ଓ ରାଜାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ କାଉନ୍‌ସିଲର ସେକ୍ରେଟାରୀ ରୂପେ କାର୍ଯ୍ୟ ନିର୍ବାହ କଲେ । ଆଇନ-ଘଟିତ ଜଟିଳ ବିଷୟ ଗୁଡ଼ିକରେ ରାଜା ବାସୁଦେବ ଟିକାୟତଙ୍କ

ବିଚକ୍ଷଣ ଶିକ୍ଷକ ଆଇନଜ୍ଞ ଶ୍ରୀ ଗିରିଶଚନ୍ଦ୍ର ଘୋଷଙ୍କ ନିକଟରୁ ପରାମର୍ଶ ଗ୍ରହଣ କରୁଥିଲେ ।

ବାମଣ୍ଡା ରାଜ୍ୟଭିତରେ ସ୍ଥାନାନ୍ତର ଯିବାକୁ ହେଲେ ଉତ୍ପୂଙ୍କର ଶ୍ୱାପଦସଙ୍କୁଳ ବନଭୂମି ଅତିକ୍ରମ କରି ଯାତାୟାତ କରିବାକୁ ହେଉଥିଲା । ଅତଏବ ଏହି ଚିର୍ଦ୍ଦସ୍ଥାୟୀ ଅଭାବ ଦୂରକରିବା ନିମନ୍ତେ ରାଜା ସୁଚଳଦେବ ଅସୀମ କାୟିକ ପରିଶ୍ରମ ସହ୍ୟକରି ଓ ପ୍ରଚୁର ଅର୍ଥବ୍ୟୟ କରି ଅସଂଖ୍ୟ ରାଜପଥ ନିର୍ମାଣ କରାଇବାକୁ ଅଗ୍ରସର ହେଲେ । ଇଞ୍ଜିନିୟରଙ୍କ ବିନା ସାହାଯ୍ୟରେ ମାନଚିତ୍ର ତିଆରି କରି, କେଉଁ ପଥ କିପରି ଭାବେ ଗଠନ କଲେ ଅଳ୍ପ ବ୍ୟୟରେ ହୋଇ ପାରିବ ଅଥଚ ଗ୍ରାମରୁ ଗ୍ରାମାନ୍ତର ଯାତାୟାତର ସୁବିଧା ହେବ, ଉତ୍ତମରୂପେ ବିଚାର କରି, ମଜୁରିଆଙ୍କ ସଙ୍ଗରେ କାଳାତିପାତ କରି ସମସ୍ତ ରାଜପଥର ନିର୍ମାଣ କାର୍ଯ୍ୟ ସମ୍ପନ୍ନ କଲେ । ଯେଉଁ ସବୁ ଇଷ୍ଟକ ଓ ଲୌହନିର୍ମିତ ସେତୁ ତାଙ୍କ ସମୟରେ ପ୍ରସ୍ତୁତ ହୋଇଅଛି ତାହା ତାଙ୍କର ନିଜର ବୁଦ୍ଧିପ୍ରସୂତ । ପ୍ରତ୍ୟେକ ରାଜପଥ ସଙ୍ଗରେ ତାଙ୍କର ସ୍ମୃତି ଜଡ଼ିତ ରହି ଆଜି ବାମଣ୍ଡାର ପ୍ରଜାମଣ୍ଡଳୀଙ୍କ ସମକ୍ଷରେ ବାସୁଦେବଙ୍କୁ ଅମର କରି ରଖିଅଛି । ତାଙ୍କଦ୍ୱାରା ନିର୍ମିତ ହୋଇଥିବା ରାଜପଥ ମଧ୍ୟରୁ କେବଳ ବାମରା ରେଲ୍‌ୱେ ଷ୍ଟେସନରୁ ଦେବଗଡ଼ର ଦୂରତା ୫୮ ମାଇଲ ଥିଲା । ଏହି ପଥ ଅନେକ ସ୍ଥଳରେ ପାହାଡ଼ ଉପରଦେଇ ଯାଇଅଛି । ପାହାଡ଼ ପର୍ବତର ଉପର ଦେଇ ପଥ ନିର୍ମାଣ କୌଶଳରେ ସ୍ଥପତି ବିଦ୍ୟା (Planning )ର ପରିଚୟ ପାଇ ଏବଂ ପଥ ଅବଲମ୍ବନର ନକ୍‌ସା ଦେଖି ମଧ୍ୟପ୍ରଦେଶର ଶାସନକର୍ତ୍ତା, ରାୟପୁରର ପଲିଟିକାଲ ଏଜେଣ୍ଟ ଏବଂ ସମ୍ବଲପୁରର ଇଂରାଜ କର୍ମଚାରୀମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ବାସୁଦେବଙ୍କୁ ଅଶେଷ ପ୍ରଶଂସା କରି ଯାଇଅଛନ୍ତି । ରାଜା ସୁଚଳଦେବ ଶ୍ରମଜୀବୀଙ୍କ ସଙ୍ଗରେ ଉପବାସ ଓ ସମାନ ଆହାରରେ ତୁଷ୍ଟ ହୋଇ, ସେମାନଙ୍କ ସଙ୍ଗରେ ରୌଦ୍ରବର୍ଷାରେ ସମାନ ଶ୍ରମ କରି ରାଜଚରିତ୍ରର ମର୍ଯ୍ୟାଦା ବୃଦ୍ଧିକରି ଯାଇଅଛନ୍ତି । ଏହିରୂପ ଦୃଷ୍ଟାନ୍ତ ବିଦେଶରେ ବିରଳ ନ ହେଲେ ମଧ୍ୟ ଆମ୍ଭ ଦେଶରେ ନିତାନ୍ତ ବିରଳ, ଏଥିରେ ସନ୍ଦେହ ନାହିଁ ।

ରାଜା ବାସୁଦେବଙ୍କ ମନ ଏତେ ଉନ୍ନତିଶୀଳ ଥିଲା ଯେ, ସେ ବାହ୍ୟ ଜଗତର ନିତ୍ୟନୂତନ କାର୍ଯ୍ୟର ଆବହାଓ୍ୱା ଆନୟନ ନିମନ୍ତେ

ସହସ୍ରାଧିକ ଏକର ଜମି ବେଙ୍ଗଲ ନାଗପୁର ରେଲଓ୍ୱେକୁ ଦାନକରି ନିଜ ରାଜ୍ୟର ଭିତର ଦେଇ ରେଳ ଚଳାଚଳର ବ୍ୟବସ୍ଥା କରିବା ନିମନ୍ତେ ରେଲ କମ୍ପାନୀକୁ ଆଦେଶ ଦେଇଥିଲେ । ସେ ବାମଣ୍ଡା ଷ୍ଟେସନ ଓ ସମ୍ବଲପୁରରୁ ଦେବଗଡ଼କୁ ରାଜପଥ ଦ୍ୱାରା ସଂଲଗ୍ନକରି କ୍ଷାନ୍ତ ହୋଇ ନ ଥିଲେ । ପାର୍ଶ୍ୱବର୍ତ୍ତୀ ପାଲ୍‌ଲହଡ଼ା, ବଣାଇଁ, ତାଳଚେର, ରେଢ଼ାଖୋଲ ପ୍ରଭୃତି ରାଜ୍ୟମାନଙ୍କର ସୀମାନା ପର୍ଯ୍ୟନ୍ତ ଦେବଗଡ଼ରୁ ସୁଗମ ରାଜପଥ ରଚନା କରାଇ ସେହି ଦେଶୀୟ ବହୁଲୋକଙ୍କ ଆଶୀର୍ବାଦ ଭାଜନ ହୋଇଥିଲେ । "ପଥ ରଚନାର ସୁପଟୁ ବିଦ୍ୟାର କୌଶଳ" ପ୍ରଦର୍ଶନ କରେ ଏବଂ "ଅସହ୍ୟ କଷ୍ଟ ସ୍ୱୀକାର କରି ସେ କପରି ଭାବେ ଘାଟ, ପଥ ରଚନା କରାଇ ଅଛନ୍ତି ଏବଂ ପ୍ରତ୍ୟେକ କାର୍ଯ୍ୟ ନିଜେ ପରିଚାଳନା କରିବା ଫଳରେ ତାହା ସୁଫଳ ପ୍ରଦାନ କରିଅଛି" ଏହା ଇଂରାଜ ରାଜସରକାରଙ୍କ ବାର୍ଷିକ ବିବରଣୀରେ ସ୍ପଷ୍ଟଭାବେ ଅଙ୍କିତ ରହିଅଛି :—

"During the year the construction of the road connecting Deogarh, the chief town of the state, with the Bengal Nagpur Railway, which passes through the Tahsil head-quarters of Kuchinda, has been pushed with vigour. Near Kuchinda there is a very difficult ghat, and this has now been made practicable for wheeled traffic by a really skilful piece of engineering, directed and supervised by the Raja himself, who spent three weeks in camp at this place at a very unhealthy season of the year. Raja Sudhal Deo sets a most excellent example to the other Garjhat chiefs, & instead of leaving the business of governing his state to others, he sees himself to every branch of its administration. The consequence is that all institutions are well-managed and are thriving."

( Administration Report. 1891 )

ସମସ୍ତ ରାଜପଥ ନିର୍ମ୍ମାଣରେ କେତେ ଯେ ଅର୍ଥବ୍ୟୟ କରିବାକୁ ପଡ଼ିଅଛି, କେତେ ଶତ ପର୍ବତ ଡିନାମାଇଟ୍ ଦ୍ୱାରା ଚୂର୍ଣ୍ଣ କରିବାକୁ ପଡ଼ିଅଛି, ଏବଂ କେତେ ଯେ ଅରଣ୍ୟଭୂମି ପରିଷ୍କାର କରିବାକୁ ହୋଇଅଛି ତାର କଳନା ନାହିଁ । ଅପେକ୍ଷାକୃତ ବୃହତ୍ତର ରାଜ୍ୟର ଶାସନ ଓ ସାଧନର ଭାର ରାଜା ବାସୁଦେବଙ୍କ ପରି କର୍ମ୍ମଶୀଳ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ ଥିଲେ ଆହୁରି ଯେ କେତେ ଶୁଭଫଳ ସମ୍ଭୋଗ କରି ସୁବୃହତ୍ ଜନ ସମାଜ ଉପକୃତ ହୋଇଥାନ୍ତେ ତାହା କହିବା ବାହୁଲ୍ୟ ମାତ୍ର ।

## ରାଜପରିବାର

ରାଜା ନାନା ତୀର୍ଥ ଓ ଦେଶ ପର୍ଯ୍ୟଟନ କରିବା ଫଳରେ ଶାରୀରିକ, ମାନସିକ ଓ ନୈତିକ ସ୍ୱାସ୍ଥ୍ୟ ଲାଭ କରି ନିଜର ରାଜଧାନୀକୁ ଫେରିବା ପରେ, ଗୁରୁଜନମାନେ ତଥା ଆତ୍ମୀୟସ୍ୱଜନବର୍ଗ ପୁନର୍ବାର ଦାରପରିଗ୍ରହ ନିମନ୍ତେ ଅନୁରୋଧ କଲେ । ସେ ବିଚାର କରି ସ୍ଥିରକଲେ ଯେ ସଂସାରରେ ରହି ରାଜପରିବାରର ଓ ପ୍ରଜାମଣ୍ଡଳୀଙ୍କର ସର୍ବବିଧ କଲ୍ୟାଣ ସାଧନର ଚେଷ୍ଟା ଯେତେବେଳେ ତାଙ୍କର ପ୍ରଧାନ ଲକ୍ଷ୍ୟ, ସେତେବେଳେ ସମସ୍ତଙ୍କ ଅନୁରୋଧରେ ପୁନର୍ବାର ଦାରାନ୍ତର ଗ୍ରହଣ ପ୍ରସ୍ତାବରେ ସମ୍ମତି ପ୍ରଦାନ କରିବାହିଁ କର୍ତ୍ତବ୍ୟ । ଅନନ୍ତର ସେ ମୟୂରଭଞ୍ଜ ରାଜବଂଶର ଶାଖା ଉଲୁଆଁ ଜମିଦାରଙ୍କ ଦୁଇ କନ୍ୟାଙ୍କର ପାଣିଗ୍ରହଣ କଲେ ଏବଂ ପରେ ସିଂହଭୂମି ଅନ୍ତର୍ଗତ ଖରସୁଆଁର ଠାକୁର ମାଳମଣି ବାହାଦୁରଙ୍କ ଭଗିନେୟୀଙ୍କ ପାଣିଗ୍ରହଣ କରିଥିଲେ । ତିନିରାଣୀ ବାମଣ୍ଡାର ରାଜସଂସାରରେ ରାଜପରିଚର୍ଯ୍ୟାରେ ନିଯୁକ୍ତ ଥାଇ ପରମ ସୁଖରେ କାଳଯାପନ କରିଅଛନ୍ତି । ରାଜା ସୁଚଳଦେବଙ୍କ ତରୁଣ ବୟସର ବିରହବେଦନା ତାଙ୍କର ସୁକୁମାର ହୃଦୟରେ ଯେଉଁ ପରିବର୍ତ୍ତନ ଆଣିଥିଲା, ସେହି ପରିବର୍ତ୍ତନର ପ୍ରବଳ ଶକ୍ତି ତାଙ୍କର ଉଚ୍ଚଶିକ୍ଷାଜାତ ଉଚ୍ଚଭାବସମ୍ପନ୍ନ ହୃଦୟରେ ପ୍ରତିଷ୍ଠା ଲାଭ କରି, ଶେଷଜୀବନ ପର୍ଯ୍ୟନ୍ତ ତାଙ୍କର ଅନାସକ୍ତ ହୃଦୟ ଓ ମନ ପରବର୍ତ୍ତୀ ରାଣୀମାନଙ୍କ ନିକଟରେ ଅସଙ୍ଗତ ଆନୁଗତ୍ୟ ସ୍ୱୀକାର କରି ନ ଥିଲା । ଏକଦିଗରେ ଯେପରି କାହାରିପ୍ରତି ଅବଜ୍ଞା,ଅନାଦର ବା ଉପେକ୍ଷା ପ୍ରଦର୍ଶନ କରିବା ତାଙ୍କର ସ୍ୱଭାବବିରୁଦ୍ଧ ଥିଲା ଅନ୍ୟ ଦିଗରେ ଠିକ୍ ସେହିପରି କାହାକୁ ନିଜର ଜୀବନ ଉପରେ ପ୍ରଭୁତ୍ୱ ବିସ୍ତାର କରାଇଦେବା ତାଙ୍କର ଶିକ୍ଷା, ଦୀକ୍ଷା ଓ ସ୍ୱଭାବ ଚରିତ୍ରରେ ସ୍ଥାନ ପାଇ ନ ଥିଲା । ସୁତରାଂ

ଛଅରାଣୀ ଥାଇ ମଧ୍ୟ ରାଜା ବାସୁଦେବଙ୍କ ବ୍ୟକ୍ତିତ୍ୱ ଓ ଆଚରଣ ପ୍ରଭାବରୁ ସେମାନଙ୍କ ମଧ୍ୟରେ କେବେହେଲେ ସପତ୍ନୀଭାବ ପ୍ରକାଶ ପାଇ ନଥିଲା ଏବଂ ସେମାନେ ପରସ୍ପରପ୍ରତି ଆକୃଷ୍ଟା ହୋଇ ସଂସାର-ଧର୍ମ ପାଳନ କରି ରାଜ-ସଂସାରକୁ ସୁଖମୟ ଓ ଶାନ୍ତିମୟ କରିବାରେ ସମର୍ଥ ହୋଇଥିଲେ । ଏମାନେ ମାତୃହୀନ ସଚ୍ଚିଦାନନ୍ଦଙ୍କୁ ଆତ୍ମଜ ରୂପେ ସ୍ନେହ କରୁଥିଲେ ଏବଂ ସଚ୍ଚିଦାନନ୍ଦ ମଧ୍ୟ ରାଣୀମାନଙ୍କୁ ଜନନୀବତ୍ ଭକ୍ତି ଓ ଶ୍ରଦ୍ଧା କରୁଥିଲେ ।

ଛଅରାଣୀ ଏଗାରଟି କନ୍ୟା ଓ ଆଠଟି ପୁତ୍ରଙ୍କର ଜନନୀ ହୋଇଥିଲେ । ଏମାନଙ୍କ ମଧ୍ୟରୁ ଦ୍ୱିତୀୟା ରାଣୀଙ୍କର ଦୁଇ ପୁତ୍ର ଓ ଛଅ କନ୍ୟା, ତୃତୀୟାଙ୍କର ପାଞ୍ଚ କନ୍ୟା ଓ ଛଅ ପୁତ୍ର ଏବଂ ଚତୁର୍ଥୀ ରାଣୀଙ୍କର ଛଅ କନ୍ୟା ଓ ଛଅ ପୁତ୍ର । ତୃତୀୟା ରାଣୀଙ୍କର ପ୍ରଥମ କନ୍ୟା ବାସୁଦେବଙ୍କ ଜ୍ୟେଷ୍ଠା ରାଜକୁମାରୀ ରୂପେ ରାଜ-ସଂସାରକୁ ସରସ ଓ ଆନନ୍ଦ-ମୁଖରିତ କରିଥିଲେ । ଏହାଙ୍କ ପରେ ଏହି ତୃତୀୟା ରାଣୀଙ୍କର ଏକ ପୁତ୍ର ସନ୍ତାନ ଲାଭରେ ରାଜସଂସାର ପୁନର୍ବାର ଆନନ୍ଦପୂର୍ଣ୍ଣ ହୋଇ ଉଠିଲା । ସେ ବଡ଼ କୁମାର ବଳଭଦ୍ର ଦେବ । ବାମଣ୍ଡାର ରାଜକୁମାରମାନଙ୍କ ମଧ୍ୟରେ ଜ୍ୟେଷ୍ଠପୁତ୍ର ଟିକାୟତ୍ ଓ ଦ୍ୱିତୀୟ କୁମାର ପଟ୍ଟାୟତ୍ ବୋଲି ଅଭିହିତ ହୋଇଥାନ୍ତି । ଅପର କୁମାରଗଣଙ୍କ ନାମର ପୂର୍ବରେ "ଲାଲ୍" ଶବ୍ଦ ବ୍ୟବହୃତ ହୋଇଥାଏ । ଅନ୍ୟ କୁମାରମାନେ ଲାଲ ଦୁଷ୍ମନ୍ତ ଦେବ, ଲାଲ ଦୟାନିଧି ଦେବ, ଲାଲ ଜୟନାରାୟଣ ଦେବ, ଲାଲ ରାଜୀବଲୋଚନ ଦେବ, ଲାଲ ଲଳିତମୋହନ ଦେବ, ଲାଲ ପଦ୍ମଲୋଚନ ଦେବ ଓ ଲାଲ ଲାଲମୋହନ ଦେବ ।

ଯୁବରାଜ ଓ କୁମାରଗଣଙ୍କର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ସେମାନଙ୍କୁ ସୁଶିକ୍ଷା ପ୍ରଦାନ କରିବା ନିମନ୍ତେ ଏବଂ ନବପ୍ରତିଷ୍ଠିତ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପରିଚାଳନା ନିମନ୍ତେ ରାଜା ବାସୁଦେବ ସର୍ବାଗ୍ରେ ଶ୍ରୀଯୁକ୍ତ ଗଣେଶ୍ୱର ପଟ୍ଟନାୟକ ମହାଶୟଙ୍କୁ ନିଯୁକ୍ତ କଲେ । ପରେ ଜଣେ ଉପଯୁକ୍ତ ଶିକ୍ଷକ ନିର୍ବାଚନ କରି ପଠାଇବାକୁ ରାଜା ବାସୁଦେବ, ବିଦ୍ୟାସାଗର ମହାଶୟଙ୍କ ନିକଟକୁ ଅନୁରୋଧ କରି କଲିକତାକୁ ପତ୍ର ଲେଖିଥିଲେ । ତାହା ଫଳରେ ସେ ବଙ୍ଗ ସାହିତ୍ୟରେ ସୁପରିଚିତ ପ୍ରବୀଣ ଲେଖକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ବି. ଏ. ଙ୍କୁ ମନୋନୀତ କରି

ବାମଣ୍ଡାକୁ ପ୍ରେରଣ କରିଥିଲେ । ବିଜୟବାବୁ ତିନିବର୍ଷକାଳ ଅବସ୍ଥାନ ପୂର୍ବକ ସୁଶିକ୍ଷାର ସୁପକ୍ୱବୀଜ ବପନ କରି ବିଦାୟ ଗ୍ରହଣ କରିଥିଲେ ।

ରାଜକୁମାରମାନଙ୍କ ଶିକ୍ଷାର ସୂଚନାରେ ବାମଣ୍ଡା ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠିତ ଥିଲେହେଁ ଏହା ଶ୍ରୀଯୁକ୍ତ ରେବତୀମୋହନ ଦାସଗୁପ୍ତ ଏମ. ଏ. ଙ୍କ ନେତୃତ୍ୱରେ ଉଚ୍ଚଶ୍ରେଣୀର ଇଂରାଜୀ ବିଦ୍ୟାଳୟରେ ଗଠିତ ହୋଇ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେଲା । ଉକ୍ତ ମହାଶୟ କୁମାରଗଣଙ୍କର ଶିକ୍ଷା ନିମନ୍ତେ ବିଶେଷ ମନୋଯୋଗୀ ହେଲେହେଁ ସାଧାରଣ ପ୍ରଜାମଣ୍ଡଳୀ ଏହାଙ୍କ ଶିକ୍ଷାଦାନର ଉତ୍ତମ ଫଳ ସମ୍ଭୋଗ କରି ଚରିତାର୍ଥ ହୋଇଅଛନ୍ତି । ସେଥି ନିମନ୍ତେ ସ୍ଥାନୀୟ ଜନସାଧାରଣ ତାଙ୍କ ନାମରେ ଶ୍ରଦ୍ଧାଭରେ ଭକ୍ତିପୁଷ୍ପ ଅର୍ପଣ କରିଥାଆନ୍ତି ।

"The headquarter schools at Deogarh, which provide a higher education both in Vernacular & English, and are presided over by highly qualified masters, having long since established a reputation which appears to have fully sustained in the year under report." ( Administration Report. 1895 )

ଏହା କିପରି ଭାବେ ସୁଗଠିତ ଓ ସୁପରିଚାଳିତ ଥିଲା, ତାହା ଉପରଲିଖିତ ଇଂରାଜ ସରକାରଙ୍କ ବିବରଣୀରୁ ପରିଜ୍ଞାତ ହୋଇପାରେ ।

ରାଜା ସୁଢଳଦେବ ସ୍ୱୀୟ କୁମାରମାନଙ୍କୁ ଶିକ୍ଷା ପ୍ରଦାନ କରାଇବା ସଙ୍ଗେ ସଙ୍ଗେ ବିନାବ୍ୟୟରେ ପ୍ରଜାଙ୍କର ପ୍ରାଥମିକ ଶିକ୍ଷାଲାଭର ବ୍ୟବସ୍ଥା କରି ତାହା ବାଧ୍ୟତାମୂଳକ ରୂପେ ପ୍ରବର୍ତ୍ତନ କରାଇ ପ୍ରଜା-ସାଧାରଣଙ୍କର ଅଶେଷ କଲ୍ୟାଣ ସାଧନ କରି ଯାଇଅଛନ୍ତି । ନିର୍ଦ୍ଦିଷ୍ଟ ବୟସ ପୂର୍ଣ୍ଣ ହେଲେ, ବାଳକମାନଙ୍କୁ ବିଦ୍ୟାଳୟକୁ ନ ପଠାଇଲେ, ଅଭି-ଭାବକଙ୍କୁ ଦଣ୍ଡନୀୟ ହେବାକୁ ପଡ଼ୁଥିଲା । ଏହି ନିମ୍ନ ଶ୍ରେଣୀର ଶିକ୍ଷାପ୍ରଣାଳୀ ପରିଦର୍ଶନ କରି ଇଂରେଜ ଶାସକମାନେ ବାର୍ଷିକ ବିବରଣୀରେ ମଧ୍ୟ ପ୍ରଶଂସା କରି ଲିପିବଦ୍ଧ କରି ଯାଇଅଛନ୍ତି :—

"Bamra has maintained its reputation for a sound system of rural education, its Rajcoomar school is the best in the states." ( Report. 1898 )

ରାଜା ବାସୁଦେବ କେବଳ ନିଜ ରାଜ୍ୟ ପାଇଁ ବିଦ୍ୟାଳୟ ରକ୍ଷା-କରି ରାଜକର୍ତ୍ତବ୍ୟ ସମ୍ପନ୍ନ କରି ସନ୍ତୁଷ୍ଟ ରହୁନଥିଲେ । ସେ ପାର୍ଶ୍ୱବର୍ତ୍ତୀ ରାଜ୍ୟର ରାଜ-କୁମାର ଓ ପ୍ରଜାସାଧାରଣଙ୍କୁ ଅଣାଇଁ ଉଚ୍ଚଶିକ୍ଷା ପ୍ରଦାନ କରାଇବାରେ ତ୍ରୁଟି କରୁ ନ ଥିଲେ । ଅନେକ ସମୟରେ ବାର୍ଷିକ ପାରିତୋଷିକ ବିତରଣ ସଭାରେ ସ୍ୱୟଂ ଉପସ୍ଥିତ ଥାଇ ଶିକ୍ଷକ ଓ ଛାତ୍ରଗଣଙ୍କୁ ନାନାବିଧ ଉପଦେଶ ଦେଇ ନୂତନ ଉନ୍ନତି ଲାଭ ନିମନ୍ତେ ଉତ୍ସାହିତ କରୁଥିଲେ । ଏତଦ୍‌ଭିନ୍ନ ବିଦେଶରେ ବିଦ୍ୟାଳୟ ପ୍ରତିଷ୍ଠାଦି ନାନାବିଧ ଗଠନଶୀଳ କାର୍ଯ୍ୟ ପାଇଁ ଏବଂ ବିଶେଷତଃ ଦୁଃସ୍ଥ ଶିକ୍ଷାର୍ଥୀ ବାଳକଗଣଙ୍କୁ ପ୍ରଚୁର ଅର୍ଥ ସାହାଯ୍ୟ କରିଅଛନ୍ତି ।

କୁମାରମାନଙ୍କର ବିଦ୍ୟାଶିକ୍ଷାର ସଙ୍ଗେ ସଙ୍ଗେ ଆନୁସଙ୍ଗିକ ସଙ୍ଗୀତାଦି କଳାବିଦ୍ୟା, ଚିତ୍ରବିଦ୍ୟା ଏବଂ ଯୁଦ୍ଧବିଦ୍ୟା ସମ୍ପର୍କରେ ଅଶ୍ୱାରୋହଣ, ଅସ୍ତ୍ରଚାଳନ ଓ ଲକ୍ଷ୍ୟଭେଦ ଶିକ୍ଷା ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥା କରିଥିଲେ । ରାଜକୁମାରମାନଙ୍କୁ ସଂସାରରେ ପ୍ରବେଶ କରି ପ୍ରତିଷ୍ଠା ଲାଭ କରିବା ନିମନ୍ତେ ପ୍ରତ୍ୟେକଙ୍କପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରି ଯାଇଅଛନ୍ତି । କୁମାରଗଣ ସମସ୍ତେ ସୁଶିକ୍ଷିତ ଓ ସାହିତ୍ୟିକ ; ତନ୍ମଧ୍ୟରୁ ବଡ଼କୁମାର ବଳଭଦ୍ର ଦେବ ଉତ୍କଳଖଣ୍ଡରେ କବି ଓ ସାହିତ୍ୟିକ ଖ୍ୟାତି ଅର୍ଜ୍ଜନ କରି ଅଛନ୍ତି । ଟିକାୟତ୍ ସଚ୍ଚିଦାନନ୍ଦ ସର୍ବଗୁଣରେ ଆଦର୍ଶ ପିତାଙ୍କର ଆଦର୍ଶ ପୁତ୍ର ବୋଲି ସ୍ୱୀକାର କରିବାକୁ ହେବ ।

୧୮୯୨ ସାଲର ଶାସନ ବିବରଣୀରୁ ଜଣାଯାଏ :—

"Raja Sudhal Deb is a thoroughly competent and enlightened ruler, not only has he himself done a great deal to improve his state, but by giving his sons the execllent education both in Vernacular & English, he has done his best to secure the future prosperity of his subjects." ( H. H. Priest. 1892 ).

ରାଜକୁମାରୀମାନଙ୍କର ସୁଶିକ୍ଷା ନିମନ୍ତେ ରାଜବାଟି-ସଂଲଗ୍ନ ସ୍ୱତନ୍ତ୍ର ବିଦ୍ୟାଳୟ ସ୍ଥାପନ କରି ସେଥିରେ କୁମାରୀମାନଙ୍କୁ ସଂସ୍କୃତ, ଓଡ଼ିଆ ଓ ବଙ୍ଗଳା ଶିକ୍ଷାଦେବାର ବ୍ୟବସ୍ଥା କରିଥିଲେ । ବାଳିକାଙ୍କର ଲେଖାପଢ଼ାରେ ଆଗ୍ରହ ଓ ଅନୁରାଗ ଦେଖି ସେମାନଙ୍କ ପାଇଁ ଇଂରାଜୀ

ଶିକ୍ଷାର ସୁବଧା ନିମନ୍ତେ ସୁନ୍ଦର ବ୍ୟବସ୍ଥା ଥିଲା । ରାଜକୁମାରୀମାନେ କେବଳ ସୁଶିକ୍ଷିତା ନ ହୋଇ ପରଣସୂ ପାଶରେ ଆବଦ୍ଧ ହୋଇ ନାହାନ୍ତି । ହାରମୋନିୟମ୍-ସ୍ୱର-ମିଶ୍ରିତ ବାଳିକାଙ୍କର ମଧୁର ସ୍ୱରଲହରୀ ତାଙ୍କର କର୍ଣ୍ଣରେ ଅମୃତ ସେଚନ କରୁଥିଲା ଏବଂ ଏବିଷୟରେ ସେ ରାଜକନ୍ୟା-ଗଣଙ୍କର ଉତ୍ସାହ ଓ ଆୟୋଜନର ପୂର୍ଣ୍ଣଭାବେ ପୃଷ୍ଠପୋଷକ ଥିଲେ । ସେ ସର୍ବଦା କହୁଥିଲେ, "ମୁହଁର କଥାରେ କୌଣସି କାର୍ଯ୍ୟ ହୁଏ ନାହିଁ, କାର୍ଯ୍ୟରେ ଦେଖାଇଦେବା ଆବଶ୍ୟକ ; ଓ କୌଣସି ବିଷୟ ଜନ-ସାଧାରଣଙ୍କୁ ଶିକ୍ଷା ଦେବାକୁ ହେଲେ ସର୍ବାଗ୍ରେ ତାହା ନିଜ ପରିଜନଙ୍କ ମଧ୍ୟରେ ଓ ଗୃହରେ କାର୍ଯ୍ୟକାରୀ କରି ଦେଖାଇ ଦେବାକୁ ହେବ ।" ଏହାର ଫଳରେ ବାମଣ୍ଡାରେ ବର୍ତ୍ତମାନ ହାରାହାରି ଲେଖାପଢ଼ାଜଣା ନାରୀର ସଂଖ୍ୟା ନିତାନ୍ତ ଅଳ୍ପ ନୁହେ । ରାଜକୁମାରୀଗଣ ସୁଶିକ୍ଷିତା ଓ ବିଦୁଷୀ ହୋଇ ଯଥାସମୟରେ ଖଡ଼ିଆଳ, ବସ୍ତର, ସୁରଗୁଜା, ବଣାଇ, ତାଳଚେର, ପାଲ୍‌ଲହଡ଼ା, ଷଢ଼େଇକଳା, କେରା, ପଞ୍ଚକୋଟ, କାଶୀପୁର ଓ ଟିକାଲି ରାଜ୍ୟମାନଙ୍କରେ ରାଜରାଣୀ ଓ ରାଜବଧୂ ରୂପେ ପରିଣୟ ସୂତ୍ରରେ ଆବଦ୍ଧ ହୋଇଥିଲେ ।

## ମାନମନ୍ଦିର ଓ ବିଜ୍ଞାନାଗାର

ବହୁ ଅର୍ଥ ବ୍ୟୟ କରି କାଶୀର ମାନମନ୍ଦିର ଅନୁରୂପ ମାନମନ୍ଦିର ସମ୍ବଳିତ ସୁସଜ୍ଜିତ ବିଜ୍ଞାନାଗାର ସ୍ଥାପିତ ହେଲା । ଏଥି ନିମନ୍ତେ ସମସ୍ତ ବୈଜ୍ଞାନିକ ଯନ୍ତ୍ର, ତଡ଼ିତ୍ ପ୍ରସ୍ତୁତ କରିବାର ଯନ୍ତ୍ର, ରଞ୍ଜନ ଆଲୋକ (X-ray), ବିବିଧ ବିଷୟର ବିଶ୍ଳେଷଣ ଯନ୍ତ୍ର, ଦୂରବୀକ୍ଷଣ ଓ ଅଣୁବୀକ୍ଷଣ ପ୍ରଭୃତି ଯନ୍ତ୍ର ଏବଂ ସେ ସମସ୍ତ ବ୍ୟବହାର କରିବାର ଉପଦେଶପୂର୍ଣ୍ଣ ଗ୍ରନ୍ଥ ସମସ୍ତ ସଂଗ୍ରହ କରିବାକୁ ରାଜା ବାସୁଦେବଙ୍କୁ ରାଶୀକୃତ ଧନ ବ୍ୟୟ କରିବାକୁ ପଡ଼ିଥିଲା । ଏତଦ୍‌ଭିନ୍ନ ଭିନ୍ନ ଭିନ୍ନ ସମୟରେ ବିଜ୍ଞାନାଗାରର ପୂର୍ଣ୍ଣାଙ୍ଗ ସାଧନ ନିମନ୍ତେ ଯେତେବେଳେ ଯାହା ପ୍ରୟୋଜନ ହୋଇଅଛି, ସେ ସବୁ ସଂଗ୍ରହ ପାଇଁ ଅକାତରେ ଅର୍ଥ ବ୍ୟୟ କରି ଯାଇଥିଲେ । ରାଜାଙ୍କର ଭୌଗୋଳିକ ଜ୍ଞାନ ଉତ୍ତମ ଥିଲା ଏବଂ ସେ ନିଜେ ଜ୍ୟୋତିର୍ଷୀ ଥିଲେ । କାଶୀ ଓ ମିଥିଳାରୁ ଜ୍ୟୋତିଷଜ୍ଞ ପଣ୍ଡିତ ଅଣାଇଁ ନିଜର ବିବେଚନା ଓ ଅଭିଜ୍ଞତାର ଅନୁରୂପ ପ୍ରାଚୀନ ପଦ୍ଧତି ସଙ୍ଗରେ ଆଧୁନିକ ବିଜ୍ଞାନ ତତ୍ତ୍ୱର ମିଳନ ସାଧନ କରିଥିଲେ । କଟକ କଲେଜର ବିଜ୍ଞାନାଗାର୍ଯ୍ୟ

ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ମହାଶୟଙ୍କୁ ବହୁ ସମାଦରରେ ନିମନ୍ତ୍ରଣ କରି ଡାକଆଣି ବିଜ୍ଞାନାଗାରକୁ ପରିଦର୍ଶନ କରାଇଥିଲେ ଏବଂ ତାଙ୍କର ଉପଦେଶ ଅନୁସାରେ ଆଧୁନିକ ଯନ୍ତ୍ରର ଯାହା କିଛି ଅଭାବ ଥିଲା ତାହା ପରିପୂର୍ଣ୍ଣ କରି ରାଜା ଗଭୀର ଆନନ୍ଦ ଅନୁଭବ କରିଥିଲେ । ଯୋଗେଶ ବାବୁ ବାସୁଦେବଙ୍କର ରୁଚି, ଆକାଙ୍‌କ୍ଷା ଓ ଆଦର୍ଶରେ ମୋହିତ ହୋଇ ପ୍ରଚୁର ପ୍ରଶଂସା କରିଥିଲେ । ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା ରାୟ ରାଧାନାଥ ରାୟ ବାହାଦୁର ଯେଉଁ ଆନ୍ତରିକତା ପ୍ରକାଶ କରି ଯାଇଅଛନ୍ତି ତାହା ନିମ୍ନରେ ଉଦ୍ଧାର କରାଗଲା :—

"ବାସୁଦେବ କେବଳ ବିଧିର ନୃପତି ନ ଥିଲେ, ସେ ନିସର୍ଗର ନୃପତି । ରାଜୋଚିତ ଗୁଣ ଥାଉ ବା ନ ଥାଉ, କେବଳ ମାତ୍ର ଜନ୍ମଗ୍ରହଣ ସ୍ୱୀକାର କରିବାର ଦାବୀର ନିମିତ୍ତ ଅଧିକାଂଶ ରାଜା ରାଜା ହୋଇଥାନ୍ତି । ରାଜତନ୍ତ୍ର ଦେଶ ସମୂହରେ ପିତାର ପୁତ୍ର ହେବା ସିଂହାସନ ଲାଭର ଯଥେଷ୍ଟ ଗୁଣବତ୍ତା ବୋଲି ସର୍ବତ୍ର ପରିଗୃହୀତ । ବାସୁଦେବ ମଧ୍ୟ ସେହିରୂପ ଭାଗ୍ୟଧର ହୋଇ ଜନ୍ମଗ୍ରହଣ କରିଥିଲେ ସତ୍ୟ, କିନ୍ତୁ ସେ ପୂର୍ଣ୍ଣମାତ୍ରାରେ ଏହି ସୌଭାଗ୍ୟର ଉପଯୁକ୍ତ ଥିଲେ । ତାଙ୍କର ଅମୂଲ୍ୟ ଜୀବନ ଏହାର ଅଭ୍ରାନ୍ତ ପ୍ରମାଣ ପ୍ରଦାନ କରିଅଛି । ସିଂହାସନ ଲାଭ ଦ୍ୱାରା ଯେଉଁ ସାଧନ ନିଚୟ ତାଙ୍କର ହସ୍ତଗତ ହୋଇଥିଲା, ତାଙ୍କର ସାଧନା ମଧ୍ୟ ସେହିରୂପ ଥିଲା ଏବଂ ସିଦ୍ଧି ମଧ୍ୟ ସାଧନାର ଅନୁରୂପ ହୋଇଥିଲା ।"

ଏହା ପରେ ରାଜା ବାସୁଦେବଙ୍କ ସମ୍ବନ୍ଧରେ କବି ନନ୍ଦକିଶୋରଙ୍କର ନିମ୍ନୋଦ୍ଧୃତ କବିତ୍ୱପୂର୍ଣ୍ଣ ଉକ୍ତି ସମ୍ପୂର୍ଣ୍ଣ ସତ୍ୟ :—

"ଦୁର୍ଲ୍ଲଭ ଆସନ ଭଜି ସପତ୍ନୀ ଭାବ ବରଜି—
ବିଶାଳ ବକ୍ଷେ ଲେଟନ୍ତି କମଳା ବାଣୀ,
ବିମାତା ଭାରତୀ ସତୀ ଅଟନ୍ତି ପ୍ରେୟସୀ ଅତି
ସାମ୍ରାଜ୍ୟ ଲକ୍ଷ୍ମୀ ସର୍ବଦା ପ୍ରେୟସୀ ରାଣୀ,
ବୁଝିଛି ଏ ମର୍ମ୍ମ ନରେଶ,
ଘୋଷେ ତବ ଯଶ ତେଣୁ ଉତ୍କଳ ଦେଶ ।"

## ମୁଦ୍ରାଯନ୍ତ୍ର ପ୍ରତିଷ୍ଠା

୧୮୮୭ ଖ୍ରୀଷ୍ଟାବ୍ଦରେ ରାଜା ସୁଚଳଦେବ ଓଡ଼ିଶାର ସମ୍ୟକ୍ କଲ୍ୟାଣ ସାଧନାର୍ଥେ ଦେବଗଡ଼ରେ "ଜଗନ୍ନାଥବଲ୍ଲଭ" ନାମରେ ଗୋଟିଏ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କଲେ ଏବଂ ବର୍ଷାନ୍ତେ "ସମ୍ବଲପୁର ହିତୈଷିଣୀ" ନାମରେ ଖଣ୍ଡିଏ ସାପ୍ତାହିକ ସମ୍ବାଦପତ୍ର ପ୍ରଚାର କରି ନିଜେ ପୃଷ୍ଠପୋଷକ ଓ ପରିଚାଳକ ରୂପେ ଏହି ପତ୍ରିକାର ସାହିତ୍ୟିକ ସମ୍ପଦ ଓ ସମ୍ମାନ ବୃଦ୍ଧି ନିମନ୍ତେ ପ୍ରାଣପଣେ ଯତ୍ନ କଲେ । ପରେ ଦୀର୍ଘକାଳବ୍ୟାପୀ ସମ୍ପାଦକ ରୂପେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଥିଲେ । ପତ୍ରିକାରେ ଓଡ଼ିଶାର ପ୍ରାଚୀନ ଗୌରବର ଆଲୋଚନା ଓ ଦେଶର ତଦାନୀନ୍ତନ କାଳର ଦୁରବସ୍ଥା ଦୂର କରିବାର ନାନା ପ୍ରକାର ଇଙ୍ଗିତ ପ୍ରଦର୍ଶିତ ହେବା ଦ୍ୱାରା ଶିକ୍ଷିତ ଜନତାଙ୍କ ମଧ୍ୟରେ ଆତ୍ମଚିନ୍ତା, ଆତ୍ମମର୍ଯ୍ୟାଦା, ସ୍ୱଦେଶସେବା ଆଦି ଜ୍ଞାନର ସଞ୍ଚାର ହେଲା; ଏବଂ ସଙ୍ଗେ ସଙ୍ଗେ ନାନା ପ୍ରଶ୍ନ, ତତ୍ତ୍ୱ ଓ ତର୍କର ମୀମାଂସା ବକ୍ଷରେ ଧାରଣ କରି ପତ୍ରିକାଟି କଟକ, ଗଞ୍ଜାମ, ବାଲେଶ୍ୱର, ପୁରୀ ଓ ସୁଦୂର ରାୟପୁର ଅଞ୍ଚଳରେ ମଧ୍ୟ ନାନା କୁପ୍ରଥା ମୋଚନ ନିମନ୍ତେ ଦୁନ୍ଦୁଭିଧ୍ୱନି କରିବାକୁ ଲାଗିଲା । ଓଡ଼ିଶାର ରାୟ ରାଧାନାଥ, ମଧୁସୂଦନ ରାଓ, ବିଶ୍ୱନାଥ କର, ଫକୀରମୋହନ ସେନାପତି ଇତ୍ୟାଦି ବହୁ ସାହିତ୍ୟିକ ଓ ସୁଲେଖକ ତାଙ୍କର ବଳିଷ୍ଠ ଲେଖନୀଦ୍ୱାରା ହିତୈଷିଣୀର କଳେବରର ସୌନ୍ଦର୍ଯ୍ୟ ସମ୍ପାଦନରେ ନିଯୁକ୍ତ ହେଲେ ।

## 'ଇନ୍ଦ୍ରଧନୁ' ଓ 'ବିଜୁଳି'

ହିତୈଷିଣୀର ଏପରି ମହାପ୍ରଚାର ସମୟରେ ଦୈବକ୍ରମେ ଗୋଟିଏ ସୁବୃହତ୍ ସାହିତ୍ୟିକ କଳହର ସୂତ୍ରପାତ ହେଲା । ବିଦ୍ୟାଳୟ-ସମୂହର ଡେପୁଟୀ ଇନ୍‌ସପେକ୍ଟର ବାବୁ ଶ୍ରୀ ପ୍ୟାରୀମୋହନ ସେନ୍ ଉଚ୍ଚ ଓ ନିମ୍ନ ପ୍ରାଇମେରୀରେ ପାସକରିଥିବା ଛାତ୍ରମାନଙ୍କୁ ପାରିତୋଷିକରୂପେ ଓଡ଼ିଶାର ବିଖ୍ୟାତ ରାଜକବି ଉପେନ୍ଦ୍ର ଭଞ୍ଜଙ୍କ ଆଦିରସପୂର୍ଣ୍ଣ ପୁସ୍ତକ ଉପହାର ଦେଉଥିଲେ । କାବ୍ୟଦୃଷ୍ଟିରୁ ଗ୍ରନ୍ଥ ଅତି ଉତ୍ତମ ହେଲେହେଁ ସୁକୁମାରମତି ବାଳକମାନଙ୍କୁ ଭଞ୍ଜଗ୍ରନ୍ଥ ଉପହାର ଦେବା ସୁସଙ୍ଗତ ନ ଥିଲା । କିନ୍ତୁ ଅନେକ ସମୟରେ ପରିଣତବୁଦ୍ଧିର ମଧ୍ୟ ଭ୍ରାନ୍ତି ଜନ୍ମିଥାଏ ଏବଂ ଏ କ୍ଷେତ୍ରରେ ତାହାହିଁ ହେଲା । ବିରୁଦ୍ଧ ମନ୍ତବ୍ୟରେ ଏକମତ ନ ହୋଇ

ପ୍ୟାରୀବାବୁ 'ଇନ୍ଦ୍ରଧନୁ' ନାମକ ଗୋଟିଏ ସମାଲୋଚନା ପତ୍ରରେ ଉତ୍କଳଦୀପିକା ପକ୍ଷରୁ ନିଜ କାର୍ଯ୍ୟର ପ୍ରବଳ ସପକ୍ଷତା ଆରମ୍ଭ କଲେ । ଏଥିରେ ଉତ୍କଳଦୀପିକାର ସମ୍ପାଦକ ଗୌରୀଶଙ୍କର ରାୟ, ଦାମୋଦର ପଟ୍ଟନାୟକ ପ୍ରଭୃତି ମହୋଦୟଗଣ ପ୍ୟାରୀ ବାବୁଙ୍କ ପକ୍ଷ ଗ୍ରହଣ କଲେ । ଅନ୍ୟ ପକ୍ଷରେ ହିତୈଷିଣୀର ଦଳ ସମ୍ପାଦକ ନୀଳମଣି ବନ୍ଦ୍ୟୋପାଧ୍ୟାୟ, କଟକ ଟ୍ରେନିଂସ୍କୁଲ ହେଡ଼ମାଷ୍ଟର ଚନ୍ଦ୍ରମୋହନ ମହାରଣା, ଓଡ଼ିଶାର ସ୍କୁଲ ଇନ୍‌ସପେକ୍ଟର ରାଧାନାଥ ରାୟ, ମଧୁସୂଦନ ରାଓ ଆଦି ବିରୋଧୀରୂପେ ଠିଆହୋଇ 'ବିଜୁଳି' ନାମରେ ଆତ୍ମପରିଚୟ ଦେଲେ । ଏହି ସାହିତ୍ୟିକ କଳହର ଘୋର ଆନ୍ଦୋଳନରେ ଓଡ଼ିଶାର କାବ୍ୟାକାଶରେ ଗରଳ ଉତ୍ପନ୍ନ ହେବାକୁ ଲାଗିଲା । ସେ ସମୟରେ ଓଡ଼ିଶାରେ ଯେଉଁ ସାହିତ୍ୟସେବୀ ଖ୍ୟାତନାମା କତିପୟ ବ୍ୟକ୍ତି ଥିଲେ, ସେମାନେ ଦୁଇ ଦଳରେ ବିଭକ୍ତ ହୋଇ ଈର୍ଷାର ଅନଳରେ, ହିଂସାପୂର୍ଣ୍ଣ ବିଦ୍ୱେଷର ଘୃତାହୁତି ଦେଇ କଳହକୁ ପ୍ରବଳତର କଲେ । ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଆଲୋଚନାରେ ଉପେନ୍ଦ୍ର ଭଞ୍ଜଙ୍କ କବିତାଗୁଡ଼ିକର ଶ୍ରେଷ୍ଠତ୍ୱ ବଜାୟ ରଖିବା ନିମନ୍ତେ ଦୀପିକାର ପକ୍ଷ ଯେପରି ପ୍ରବଳ ଭାବେ ଆଲୋଚନା କଲେ, ତଦ୍ରୂପ ଉପେନ୍ଦ୍ର ଭଞ୍ଜଙ୍କର ଶିଷ୍ୟସ୍ଥାନୀୟ ସୁରୁଚିଭାବ ସମ୍ପନ୍ନ ରାଧାନାଥଙ୍କ ସପକ୍ଷରେ ହିତୈଷିଣୀର ଦଳ 'ବିଜୁଳି'ରେ ପୂର୍ଣ୍ଣ ଆଗ୍ରହରେ ଚର୍ଚ୍ଚା କଲେ । ଏହି ବାଦପ୍ରତିବାଦରେ ରାଜା ବାସୁଦେବଙ୍କର ପକ୍ଷ ସର୍ବଦା ସୁଯୁକ୍ତି ଓ ସୁବିବେଚନାର ପରିଚୟ ଦାନରେ ଯତ୍ନତତ୍ପର ଥିଲେ । ସୁତରାଂ କଳହର ଶେଷରେ ଉଭୟ ପକ୍ଷର ପାଠକ ମଣ୍ଡଳୀ ହିତୈଷିଣୀ ଦଳର ଯୁକ୍ତିର ସାରବତ୍ତା ଅନୁଭବ କରି ବିଜୁଳିର ଦଳକୁ ଜୟମାଲ୍ୟ ପ୍ରଦାନ କରିଥିଲେ । କଳହର ଉତ୍ତେଜନାରେ ଭାଷାପ୍ରତି ଅଧିକାଂଶ ଲୋକଙ୍କ ମନରେ ଆଗ୍ରହ ସୃଷ୍ଟି ହୋଇ, ଜନସାଧାରଣ ମାତୃଭାଷା ସେବାରେ ମନୋନିବେଶ କରିବାକୁ ଅଭ୍ୟସ୍ତ ହେବା ଦ୍ୱାରା ସାହିତ୍ୟ କ୍ଷେତ୍ରରେ ଉତ୍ତମ ଫଳପ୍ରାପ୍ତି ହୋଇଥିଲା ।

ଦେବଗଡ଼ରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠିତ ହେବାର ବହୁ ପୂର୍ବରୁ ରାଜା ସୁଡ଼ଳଦେବ କଟକରେ 'ସୁଡ଼ଳ' ନାମରେ ଗୋଟିଏ ପ୍ରେସ୍ ସ୍ଥାପନ କରିଥିଲେ । ତହିଁରେ ରାଜାଙ୍କ ଗ୍ରନ୍ଥାଦି ଏବଂ ବହୁ ଲୋକଙ୍କ ପୁସ୍ତକର ମୁଦ୍ରଣ କାର୍ଯ୍ୟ ହେଉଥିଲା । ମାତ୍ର ଏହାର ପରିଚାଳନାରେ ଉନ୍ନତି ଦୃଷ୍ଟି

ନ ହେବାରୁ ରାଜା ଏହାର ଏକାଂଶ ପରଗୁଳକ ସୀତାନାଥ ରାୟଙ୍କୁ ଦାନ କରି ଅପରାଂଶ ଦେବଗଡ଼ସ୍ଥ 'ଜଗନ୍ନାଥ ବଲ୍ଲଭ' ପ୍ରେସ୍‌ରେ ମିଶାଇ ଦେଇଥିଲେ ।

## କାବ୍ୟଗ୍ରନ୍ଥ ଓ ରଚନାବଳୀ

ରାଜା ବାସୁଦେବଙ୍କ ରଚିତ 'ଶଶୋପୃଳା' କାବ୍ୟ କ୍ଷୁଦ୍ରକଳେବର ହେଲେହେଁ ଏଥିରେ ତାଙ୍କର ଅଳଙ୍କାର ଶାସ୍ତ୍ରରେ ତଥା କାବ୍ୟରେ ଗଭୀର ଜ୍ଞାନ ଏବଂ ରଚନା ନୈପୁଣ୍ୟର ପରିଚୟ ଦେଇଅଛନ୍ତି । ବର୍ତ୍ତମାନ ସମୟରେ ନବୀନ ଲେଖକମାନେ ଶବ୍ଦଶାସ୍ତ୍ର ଓ ଅଳଙ୍କାରରେ ପ୍ରାୟ ଅନଭିଜ୍ଞ ଦେଖାଯାନ୍ତି ; ସୁତରାଂ ସେ ସମସ୍ତ ଲେଖାରେ ଇତର ପ୍ରୟୋଗ ପରିଲକ୍ଷିତ ହୋଇଥାଏ । ଏହି 'ଶଶୋପୃଳା' ଦର୍ଶନରେ ଭକ୍ତକବି ମଧୁସୂଦନ—

"ଆନନ୍ଦ ନନ୍ଦନେ ଯଥା ମନ୍ଦାକିନୀ ଜଳେ
... ... ... ...
ଶଶୋପୃଳା-ଶଶିବକ୍ଷେ ନିରେଖି ତେସନେ
... ... ... ...
ଏତେ କାଳେ ମହାଗୀତେ ମୋହିଲେ ସକଳେ ।"

ବୋଲି "ବାମଣ୍ଡେଶ ରାଜା ଶ୍ରୀ ଶ୍ରୀ ଶ୍ରୀ ସୁଢଳ ଦେବ" ନାମକ କବିତା ଗଦ୍‌ଗଦ କଣ୍ଠରେ ଗାଇ ଯାଇଅଛନ୍ତି; ଏବଂ ଏହି "ଶଶୋପୃଳା" ସନ୍ଦର୍ଶନରେ ଛତିଶ ଗଡ଼ର ସୁନାମଧନ୍ୟ କବି ଓ ଲେଖକ ପଣ୍ଡିତ ଲୋଚନପ୍ରସାଦ ପାଣ୍ଡେୟ ତାଙ୍କର "ମହାନଦୀ" କାବ୍ୟ ଗ୍ରନ୍ଥରେ—

"... ... ରାଜର୍ଷି ସୁକବି,
କୌଶଳେ ରଚିଲେ ଶଶୋପୃଳା ଛବି ।"

ବୋଲି ସାର ବାସୁଦେବଙ୍କ "ଶଶୋପୃଳା"କୁ ସ୍ୱାଗତ କରିଛନ୍ତି ।

ବାସୁଦେବ ଓଡ଼ିଆ ଅନୁବାଦ ସହ ସଟୀକ ଚଣ୍ଡୀ, ଗଦାଧର ସ୍ମୃତି, ଦଶକର୍ମ ପଦ୍ଧତି, ମୁଣ୍ଡକୋପନିଷଦ, ସାହିତ୍ୟ ରତ୍ନାକର ଓ ଜଗନ୍ନାଥ ଅଷ୍ଟକ ସ୍ୱକୀୟ ପ୍ରେସ୍‌ରେ ପ୍ରକାଶ କରାଇ ଜନ ସାଧାରଣଙ୍କର ପ୍ରଭୂତ ଉପକାର କରିଯାଇ ଅଛନ୍ତି ।

ଅଶୁଦ୍ଧ-ଉଚ୍ଚାରଣ-ପଟୁ, ଶାସ୍ତ୍ରଜ୍ଞାନହୀନ, ସଂସ୍କୃତବର୍ଣ୍ଣରହିତ ବ୍ରାହ୍ମଣ ସମାଜ ସଂସ୍କୃତ ଭାଷାରେ ଅମନୋଯୋଗୀ ହୋଇ ବୈଦିକ କର୍ମ ଆଦି ଅଶୁଦ୍ଧ ଭାବରେ ପରିଚାଳନା କରୁଥିବାର ଉପଲବ୍ଧି କରି ରାଜା ଅତ୍ୟନ୍ତ କ୍ଲେଶ ଅନୁଭବ କରୁଥିଲେ । ରାଜ୍ୟର ସମଗ୍ର ବ୍ରାହ୍ମଣ ସମାଜ ଯେପରି ସଂସ୍କୃତ ଭାଷା ଆୟତ୍ତ କରି ନିଷ୍ଠା ଓ ବିଶୁଦ୍ଧ ଭାବେ ତାଙ୍କର କର୍ତ୍ତବ୍ୟ ସାଧନ କରି ପାରିବେ ତତ୍ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇ ବ୍ରାହ୍ମଣ-ମାନଙ୍କ ସଂସ୍କୃତ ଶିକ୍ଷାର ଉତ୍କୃଷ୍ଟ ବ୍ୟବସ୍ଥା କରିଥିଲେ । ଏଥିରେ ଯେଉଁମାନେ ଅକୃତକାର୍ଯ୍ୟ ହେଉଥିଲେ, ତାଙ୍କର ପ୍ରଜାମାନଙ୍କର ଗାର୍ହସ୍ଥ୍ୟ ଧର୍ମାନୁଷ୍ଠାନରେ ପୌରୋହିତ୍ୟ କରିବା ରାଜାଦେଶରେ ନିଷିଦ୍ଧ ଥିଲା ଏବଂ ଏହା ଅମାନ୍ୟ କଲେ ଦଣ୍ଡବିଧାନ ହେବାର ମଧ୍ୟ ପ୍ରଚାର କରା ଯାଇଥିଲା (୧୮୯୭) ।

ତହୋପୂଜା ପରି ରାଜା ବାସୁଦେବଙ୍କ ଆହୁରି କେତେକ ସ୍ୱକୃତ ଗ୍ରନ୍ଥ ଅଛି । ସେମାନଙ୍କ ମଧ୍ୟରୁ 'ବୀରବାମା' ପ୍ରଧାନ ସ୍ଥାନ ଅଧିକାର କରିଅଛି । ଝାନ୍ସିର ରାଣୀ ଲକ୍ଷ୍ମୀବାଈଙ୍କ ଶୌର୍ଯ୍ୟ ଓ ବୀର୍ଯ୍ୟ ଶ୍ରବଣରେ ତାଙ୍କର କ୍ଷତ୍ରିୟ ଧମନୀରେ ବୀର ରକ୍ତ ପ୍ରବାହିତ ହୋଇ 'ବୀରବାମା' ରୂପେ କ୍ଷରିତ ହୋଇଥିଲା । ସେହି ଲକ୍ଷ୍ମୀବାଈଙ୍କ ଚରିତ କଥା ଅବଲମ୍ବନରେ 'ବୀରବାମା' ରଚିତ, ଯାହା କି ଉତ୍କଳ ସାହିତ୍ୟ ଭଣ୍ଡାରରେ ଉଚ୍ଚ ସମାଦର ଲାଭ କରିଅଛି ।

## ବମ୍ବାଇ ଓ ଦାକ୍ଷିଣାତ୍ୟ ଭ୍ରମଣ

ଭାରତର ଉତ୍ତର-ପଶ୍ଚିମାଞ୍ଚଳ ଭ୍ରମଣାନ୍ତେ ରାଜା ବାସୁଦେବ ସୁଢ଼ଳଦେବ ଦେଶ ଭ୍ରମଣରେ ପୁନର୍ବାର ନାଗପୁର ଅଭିମୁଖରେ ଯାତ୍ରା କଲେ । ନାଗପୁରର ଅମ୍ବାଝରି ଜଳାଶୟର ନିର୍ମାଣ ପ୍ରଣାଳୀ ଓ ସହରରେ ଜଳସେଚନର ବ୍ୟବସ୍ଥା ଦେଖି ବିଶେଷ ଭାବରେ ଆକୃଷ୍ଟ ହେଲେ । ବମ୍ବେ ପଥରେ ଆର୍ଯ୍ୟାବର୍ତ୍ତର ଅନ୍ୟତମ ମନୋମୁଗ୍ଧକର ସ୍ଥାନ ନାସିକରେ ଅବତରଣ କରି ସେଠାରେ ଗୋଦାବରୀ ସ୍ନାନ, ପଞ୍ଚବଟୀ ଦର୍ଶନ, ପାଣ୍ଡବଗୁହା, ବାଜୀରାଓ ପ୍ରତିଷ୍ଠିତ ରାମ ମନ୍ଦିର ଏବଂ ତପୋବନ ନାମକ ରାମ ସୀତାଙ୍କର ଉପବନ ବାସସ୍ଥଳୀ ଦେଖି ଅତ୍ୟନ୍ତ

ସୁଖ ଅନୁଭବ କରିଥିଲେ । ବମ୍ବେ ସହରରେ ଅବସ୍ଥାନ କରି ଏଲଫ୍ୟାଣ୍ଟ ଦ୍ୱୀପର ପର୍ବତଗୁହା, ନାନା ଦେଶୀୟ ବାଣିଜ୍ୟ ପୋତ, ରାଜୋଦ୍ୟାନ, ଇତ୍ୟାଦି ବଡ଼ ବଡ଼ ଅନୁଷ୍ଠାନ ଏବଂ ଭିକ୍ଟୋରିଆ ଟାରମିନାସର ନିର୍ମାଣ କୌଶଳ ଦେଖି ଆନନ୍ଦ ଉପଭୋଗ କରିଥିଲେ । ଏତଦ୍ଦ୍ୱାରା ପ୍ରଭୂତ ଅଭିଜ୍ଞତା ଲାଭ କରି ଟିକାୟତଙ୍କୁ ସଙ୍ଗରେ ରଖି ସେହି ଅଭିଜ୍ଞତା ଅର୍ଜ୍ଜନର ସୁଯୋଗ ନେବାକୁ ଲାଗିଲେ । ବମ୍ବେଇର ପ୍ରଧାନ ପ୍ରଧାନ ବ୍ୟକ୍ତିଙ୍କ ସଙ୍ଗେ ଦେଶ ଓ ସମାଜ ସମ୍ବନ୍ଧରେ କଥାବାର୍ତ୍ତା କରି ପଣ୍ଡିତା ରମାବାଈଙ୍କ ସାରଦା ସଦନ ଯାଇ ତାଙ୍କ ସହିତ ପରିଚୟ ଲାଭରେ ଆପ୍ୟାୟିତ ହୋଇ ସଂସ୍କୃତରେ ଯେଉଁ ବାକ୍ୟାଳାପ କରିଥିଲେ ତାହା ନିମ୍ନରେ ଦିଆଗଲା:—

ସାର୍ ବାସୁଦେବଙ୍କ ପ୍ରଶ୍ନ:—

"ଯା ବୈ ବିଶ୍ୱେଶ-ଲକ୍ଷ୍ମୀପତିମୁଖ ନଳିନାନ୍ନିର୍ଗଳଦ୍ୱାକ୍ ସୁଧାବ୍ଧି—
ପ୍ରୋତ୍ତୁଙ୍ଗକଲ୍ଲୋଲଜାଲେ ତବ ପରମସୁଖଂ ପୂର୍ବ୍ବେ ହିନ୍ଦୁଧର୍ମଃ ।
ତସ୍ମାନ୍ନିର୍ବ୍ୟାଜ-ଧର୍ମ୍ମାତ୍ ସବିମଳ କୁଳଜେ ! ନିଷ୍କଳଙ୍କାତ୍ କଥଂତେ
ପ୍ରତ୍ୟାବୃତ୍ତାଃ ପବିତ୍ରାଃ ସୁଲଳିତ ମତୟୋରେମିରେବୈ ବିଧର୍ମ୍ମେ ॥

ପଣ୍ଡିତା ରମାବାଈଙ୍କ ଉତ୍ତର—

"ନାସ୍ମାକଂ ବିଧର୍ମ୍ମଃ ବସ୍ତୁତ ଈଶ୍ୱରେ ଜୀବସ୍ୟ ସମ୍ବନ୍ଧ ଏକଧର୍ମ୍ମଃ, ସତ୍ତୁ ବେଦାଽଧ୍ୟୟନାଦ୍ ଭବିଷ୍ୟତି, କିନ୍ତ୍ୱସ୍ମାକଂ ବେଦାଧିକାରୋନାସ୍ତି, ସ୍ତ୍ରୀ ଶୂଦ୍ରୌ ନାଧୀୟେତା ମିତ୍ୟୁକ୍ତେ ଏବଂ ଚ ହିନ୍ଦୁ ମତେ ସ୍ତ୍ରୀଣାଂ ହି ପତିଦେବତା ଇତ୍ୟୁକ୍ତଂ ମନୁଷ୍ୟପୂଜନଂ ସିଦ୍ଧଂ ତାବତାପରମ ପ୍ରାପ୍ତି-ର୍ନ୍ନଭବିଷ୍ୟତି ଶଙ୍କାଶାଯ୍ୟା ହିନ୍ଦୁଧର୍ମ୍ମ ପରିତ୍ୟାଗୋ ବିଶ୍ୱସ୍ତାନିତ୍ୟାଦି ।"

(ବ୍ୟାଖ୍ୟା: ପ୍ରଶ୍ନ—ଯେଉଁ ହିନ୍ଦୁଧର୍ମ୍ମ ବିଶ୍ୱେଶ୍ୱର ଓ ନାରାୟଣଙ୍କର ମୁଖପଦ୍ମରୁ ନିର୍ଗତ ବାକ୍ୟରୂପ ସୁଧାସମୁଦ୍ରର ଉତ୍ତାଳ ଓ ଚଞ୍ଚଳ ତରଙ୍ଗମାଳାର ଉପରେ ଭାସିଥିଲା, ଏବଂ ଯାହା ତୁମ୍ଭର ସୁଖର କାରଣ ଥିଲା, ହେ ବିମଳ-କୁଳୋଦ୍ଭବେ ! ସେହି ନିଷ୍କଳଙ୍କ ଓ ଅକପଟ ଧର୍ମ୍ମରୁ ତୁମ୍ଭର ପବିତ୍ର ସୁଲଳିତ ମତି କାହିଁକି ପ୍ରତ୍ୟାବୃତ୍ତ ହେଲା ଏବଂ କେଉଁ କାରଣରୁ ତାହା ଭିନ୍ନ ଧର୍ମ୍ମରେ ଆସକ୍ତ ହେଲା ?

ଉତ୍ତର—ମୁଁ ଯେଉଁ ଧର୍ମକୁ ଆଶ୍ରୟ କରିଅଛି, ତାହା ବିଧର୍ମ ନୁହେ । ଈଶ୍ୱରଙ୍କ ସଙ୍ଗରେ ଜୀବର ସମ୍ବନ୍ଧ ବସ୍ତୁତଃ ଧର୍ମ । ସେହି ସମ୍ବନ୍ଧ ବେଦାଧ୍ୟୟନରୁ ହୋଇଥାଏ । କିନ୍ତୁ ଆମ୍ଭମାନଙ୍କର ବେଦାଧିକାର ନାହିଁ । କାରଣ ଶାସ୍ତ୍ରରେ ଉକ୍ତ ହୋଇଅଛି, ସ୍ତ୍ରୀ ଏବଂ ଶୂଦ୍ର ବେଦାଧ୍ୟୟନ କରି ପାରିବେ ନାହିଁ । ଏହି ଭାବରେ ସ୍ତ୍ରୀଗଣଙ୍କ ପକ୍ଷରେ ପତିହିଁ ଦେବତା, ଏହା ଶାସ୍ତ୍ରରେ ଉକ୍ତ ଅଛି । ସୁତରାଂ ଆମ୍ଭମାନଙ୍କ ପକ୍ଷରେ ମନୁଷ୍ୟ ପୂଜନଦ୍ୱାରା ପରମ ପଦର ପ୍ରାପ୍ତି ହୋଇ ପାରେ ନାହିଁ । ଏହି ଆଶଙ୍କାରେ ମୋର ହିନ୍ଦୁଧର୍ମ ପରିତ୍ୟାଗ ଶ୍ରେୟସ୍କର ହୋଇଅଛି । )

ଅହମଦାବାଦର ସୁବୃହତ୍ କପଡ଼ା କାରଖାନା ଦେଶୀୟ ଧନରେ ପ୍ରତିଷ୍ଠିତ ଓ ଦେଶୀୟ ଲୋକଙ୍କ ଦ୍ୱାରା ପରିଚାଳିତ ହେବା ଦେଖି ସୁଚଳଦେବ ଅପରିମେୟ ଆନନ୍ଦ ଉପଭୋଗ କରି ପୁନା ଯାତ୍ରାକଲେ । ସେଠାରେ ସେ ଶିବାଜୀଙ୍କ ନାନା କୀର୍ତ୍ତି ବିଶେଷତଃ ମୁସଲମାନ-ପ୍ରଭାବ-ବିବର୍ଜିତ ନାରୀଙ୍କର ସ୍ୱାଧୀନ ଭାବରେ ବିଚରଣ ସ୍ୱ ଚକ୍ଷୁରେ ସନ୍ଦର୍ଶନ କରି ଅନ୍ୟାନ୍ୟ ପ୍ରଦେଶସ୍ଥ ନାରୀଙ୍କର କଠୋର ଅବରୋଧର ବ୍ୟବସ୍ଥା ପ୍ରତି ଆସ୍ଥାହୀନ ହୋଇଥିଲେ । ତାଙ୍କର ଉଚ୍ଚଶିକ୍ଷା ଲାଭ ଫଳରେ ସେ ପ୍ରାଚ୍ୟ ଓ ପ୍ରାଚୀନ ରୀତିନୀତିର ଉଚ୍ଚ ଆଦର୍ଶ ଗ୍ରହଣରେ ସର୍ବଦା ଅଗ୍ରସର ହୋଇ ସମୟ-ସ୍ରୋତରେ ପ୍ରାଚୀନ ରୀତିକୁ ଯେଉଁସବୁ ଆବର୍ଜନା ମଳିନ ଓ ଦୁର୍ବଳ କରିଅଛି, ସେଗୁଡ଼ିକର ମୂଳୋଚ୍ଛେଦନ କରିବା ନିମନ୍ତେ ପ୍ରାଣପଣେ ଚେଷ୍ଟା କରୁଥିଲେ । ପୁନାରୁ ଦାକ୍ଷିଣାତ୍ୟର ନନ୍ଦନକାନନ ବାଙ୍ଗାଲୋର ଗମନ କଲେ । ଦେବଗଡ଼ର ରାଜପଥ, ଉଭୟ ପାର୍ଶ୍ୱର ଅଟ୍ଟାଳିକା ଓ ଶ୍ରେଣୀବଦ୍ଧ ବାସୋପଯୋଗୀ ଗୃହ ସମସ୍ତ ଦେଖି ମନେହୁଏ, ରାଜା ସୁଚଳଦେବ ସେହି ବାଙ୍ଗାଲୋର ସହରର ଛାପ ହୃଦୟରେ ରଖି ଆପଣା ରାଜଧାନୀକୁ ସୁସଜ୍ଜ କରିଥିଲେ ।

ଆସ୍ଥାବାନ୍ ହିନ୍ଦୁରାଜାଙ୍କ ମଧ୍ୟରେ ମହୀଶୂର ଆଦର୍ଶ ରାଜ୍ୟ । ସେଠାରେ ସେ ଶୀର୍ଷ ରାଜପୁରୁଷଙ୍କ ସହିତ ରାଜ୍ୟର ହିତାହିତ ସମ୍ବନ୍ଧୀୟ ବିଷୟ ଆଲୋଚନା କରି ବିଖ୍ୟାତ ସ୍ୱର୍ଣ୍ଣଖଣି ଦେଖିବାକୁ ଗଲେ । ରାଜା ବାସୁଦେବଙ୍କ ଭ୍ରମଣରେ ଜ୍ଞାନୋପାର୍ଜ୍ଜନ ଓ ନାନା ତତ୍ତ୍ୱ ସଂଗ୍ରହ ଛଡ଼ା କେବେହେଲେ ଆମୋଦ ପ୍ରମୋଦ ଲାଭ ଉଦ୍ଦେଶ୍ୟ ନ ଥିଲା । ମହୀଶୂରରୁ ତ୍ରିଚିନାପଲ୍ଲୀ ଓ ତାଞ୍ଜୋର ଦେଇ ସେତୁବନ୍ଧ ରାମେଶ୍ୱରରେ ସୀତା ଉଦ୍ଧାରର ଅବ-

ଲମ୍ବନ ସୂଚକ ପ୍ରତିଷ୍ଠାନ ଗୁଡ଼ିକ ଦର୍ଶନ କରି ଏବଂ ଦକ୍ଷିଣର ସୁସ୍ୱାଦୁ ଆମ୍ବ ଓ କମଳାର ଗୁଳ୍ମଗଛ ସଙ୍ଗରେ ନେଇ ପଥରେ ତାଞ୍ଜୋର, କର୍ଣ୍ଣାଟ ଦେଖି ତ୍ରିଚିନାପଲ୍ଲୀରେ ପ୍ରବେଶ କଲେ । ସେଠାରେ ଉତ୍କୃଷ୍ଟ ସୂତା, ଜରି ଓ ରେଶମ ବସ୍ତ୍ର ବୟନ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରି ମାନ୍ଦ୍ରାଜ ଯାତ୍ରା କଲେ । ମାନ୍ଦ୍ରାଜର ନାନାସ୍ଥାନରେ ପ୍ରାଚୀନ ଓ ନୂତନ ସ୍ଥାବର ଓ ଜଙ୍ଗମ ତତ୍ତ୍ୱ ଅବଗତ ହୋଇ ସେଠାର ସୁବିସ୍ତୃତ ସମୁଦ୍ରତଟଭୂମି (Marine) ଦେଖି ମୁଗ୍ଧ ହୋଇଥିଲେ । ବ୍ରିଟିଶ ରାଜାଙ୍କର ପ୍ରାଚୀନତମ ଦୁର୍ଗ ଫୋର୍ଟ ସେଣ୍ଟଜର୍ଜର ସୈନ୍ୟାବାସ ଓ ଯୁଦ୍ଧୋପକରଣ ସମସ୍ତ ଦେଖି ସେ ବାଲି ରାଜାର ରାଜଧାନୀ କିଷ୍କିନ୍ଧ୍ୟା ଯାଇ ସେଠାରେ ରାମାୟଣ କଥିତ ପମ୍ପାସରୋବର, ସୀତା ହରଣ ପରେ ରାମ ଲକ୍ଷ୍ମଣଙ୍କ ମାଲ୍ୟବାନ ପର୍ବତରେ ଗୁମ୍ଫାନିବାସ, ଋଷ୍ୟମୂକ ପର୍ବତ ଓ ତୁଙ୍ଗଭଦ୍ରା ଦର୍ଶନ କରି ସମସ୍ତ ବିବରଣ ଗ୍ରହଣ କରିଥିଲେ । ତଦନନ୍ତର କାଞ୍ଚିନଗର ଓ ମଦୁରାସ୍ଥ ପ୍ରସିଦ୍ଧ ମୀନାକ୍ଷୀ ମନ୍ଦିର ଏବଂ ପାଣ୍ଡ୍ୟରାଜାଗଣଙ୍କର ପୁରାତନ କୀର୍ତ୍ତିମାନ ପରିଦର୍ଶନ କରି ମାନ୍ଦ୍ରାଜର ସମାଜ ସଂସ୍କାର କେନ୍ଦ୍ର ରାଜମାହେନ୍ଦ୍ରୀରେ ଉପସ୍ଥିତ ହେଲେ । ସମୁଦ୍ର କୂଳରେ ପର୍ବତମାଳା ଉପରେ ସ୍ଥିତ ସ୍ୱାସ୍ଥ୍ୟ-ନିବାସ ଓୟାଲଟିୟରରେ କିଛିକାଳ ରହି ଉତ୍କଳସମ୍ରାଟ ପୁରୁଷୋତ୍ତମ ଦେବଙ୍କ ଅମର କୀର୍ତ୍ତି ସୀମାଚଳ ତୀର୍ଥ ଦର୍ଶନାନ୍ତେ ବିଜୟ ନଗରକୁ ଆସି ଭାରତବିଖ୍ୟାତ ସୁସ୍ୱାଦୁ ଆମ୍ବଗଛର କଲମ ଓ ଚାରା ନିଜ ରାଜଧାନୀକୁ ପ୍ରେରଣ କଲେ । ସେଠାରୁ ପୁନର୍ବାର ମାନ୍ଦ୍ରାଜର ରେଲ୍‌ୱେ ସନ୍ଧିସ୍ଥଳ ବେଜୱାଡ଼ା ଫେରି ଭାରତୀୟ ପ୍ରଧାନ ଓ ସୁବୃହତ୍ କରଦ ମିତ୍ରରାଜ୍ୟ ହାଇଦ୍ରାବାଦର ଐଶ୍ୱର୍ଯ୍ୟ ଓ ରାଜ୍ୟପରିଚାଳନାର ତତ୍ତ୍ୱ ବିଷୟରେ ପରିଚୟ ଲାଭ କରି ଏବଂ ଗୋଲକୁଣ୍ଡାର ହୀରକଖଣି ପର୍ଯ୍ୟବେକ୍ଷଣ କରି ଭୁସାୱଲ ପଥରେ ଜବଲପୁର ଯାତ୍ରା କଲେ । ଏଠାକାର ମାର୍ବଲ-ପାହାଡ଼ ଓ ବିନ୍ଧ୍ୟ ତଟରେ ନର୍ମଦାର ବିସ୍ତୀର୍ଣ୍ଣ ଜଳରାଶିର ଶୋଭା ଉପଭୋଗ କରି କାଟନି ଓ ବିଳାସପୁର ବାଟେ ସୁସ୍ଥ ଶରୀରରେ ନିଜ ରାଜ୍ୟକୁ ପ୍ରତ୍ୟାବୃତ୍ତ ହେଲେ ।

ରାଜା ସାର ସୁଚଳଦେବ ନାନା ଦେଶ ଭ୍ରମଣ ଓ ନାନାବିଧ ଲୋକଙ୍କ ସଙ୍ଗରେ ସମ୍ମିଶ୍ରଣ ଏବଂ ତତ୍ତ୍ୱ ସଂଗ୍ରହ ଦ୍ୱାରା ଯେଉଁ ଅଭିଜ୍ଞତା ସହିତ ଜ୍ଞାନ ବିଜ୍ଞାନର ଆଲୋକ ଲାଭ କରିଥିଲେ, ତାହା ନିଜ ରାଜ୍ୟରେ

କାର୍ଯ୍ୟକାରୀ କରି ବାମଣ୍ଡାକୁ ଅଗ୍ରଗତିର ପନ୍ଥାରେ ସ୍ଥାପନ ପୂର୍ବକ ରାଜ୍ୟର ତଥା ପ୍ରଜା ବର୍ଗଙ୍କର ଚିର କଲ୍ୟାଣ ସାଧନ କରି ଯାଇଅଛନ୍ତି ।

## ରାଜ୍ୟର ଆଭ୍ୟନ୍ତରୀଣ ଉନ୍ନତି

ରାଜା ବାସୁଦେବ ନାଗପୁର ଭ୍ରମଣ କାଳରେ କମଳାଲେମ୍ବୁର ଆବାଦ ଦେଖି ନିଜ ରାଜ୍ୟରେ କମଳା ଉତ୍ପାଦନ ଉପଯୋଗୀ ଭୂମି ନିର୍ବାଚନ କରି କମଳା ଚାଷ ଆରମ୍ଭ କଲେ । ଏହା ଫଳରେ କମଳା ଲେମ୍ବୁର ଅଭାବ ରାଜ୍ୟରେ ଦୂର ହୋଇ ବାହାରକୁ ମଧ୍ୟ ପ୍ରଚୁର ଭାବରେ ରପ୍ତାନି ହେଲା । ଫଳରେ ପରେ କ୍ରମେ ଏହି ଚାଷର ବୃଦ୍ଧି ପାଇବାରୁ, ଏପରିକି ଜନ ସାଧାରଣ ମଧ୍ୟ ଏଥିରେ ଉତ୍ସାହିତ ହେବାରୁ, କମଳାଲେମ୍ବୁର ଚାଷ ପ୍ରସାର ଲାଭକରି ରାଜ୍ୟର ଅନେକ ସ୍ଥାନରେ କମଳା ବଗିଚାମାନ ଶୋଭା ପାଉଅଛି ।

ପ୍ରଜା ସାଧାରଣଙ୍କର ପ୍ରଧାନ ଅବଲମ୍ବନ, କେବଳ ବାମଣ୍ଡାରେ କାହିଁକି ସମଗ୍ର ଭାରତରେ କୃଷି । ସୁତରାଂ କୃଷିର ଉନ୍ନତି ସଙ୍ଗେ ସଙ୍ଗେ ପ୍ରଜାଙ୍କୁ ଶିକ୍ଷା ଓ ଉତ୍ସାହ ଦେବା ନିମନ୍ତେ ସେ ଦେବଗଡ଼ରୁ ଦଶ ମାଇଲ ଦୂରରେ ବଲମ୍ ନାମକ ଖମାରରେ ଆଦର୍ଶ କୃଷିକ୍ଷେତ୍ର ପ୍ରସ୍ତୁତ କରାଇ ୧୩୭ ପ୍ରକାରର ଧାନ ଅଣାଇଁ ରାଜ୍ୟରେ ସେ ସବୁ ଚାଷର ପ୍ରବର୍ତ୍ତନ କରାଇଥିଲେ । ଜମିର ଉର୍ବରତା ଓ ଉତ୍ପନ୍ନ ଶସ୍ୟର ଉତ୍କୃଷ୍ଟତା ପ୍ରଦର୍ଶନ ପାଇଁ ସେଠାରେ କୃଷି କର୍ମଚାରୀ ନିଯୁକ୍ତ କରିଥିଲେ ଏବଂ ସେମାନଙ୍କୁ ସହାୟତା ଦେବା ନିମନ୍ତେ ନିଜେ ସର୍ବଦା କୃଷିକ୍ଷେତ୍ର ପରି-ଦର୍ଶନ କରୁଥିଲେ । ପାର୍ବତ୍ୟ-ପ୍ରଦେଶରେ ଆବାଦୀ ଜମିର ଗୁଣାଗୁଣ ନିର୍ଦ୍ଧାରଣ କରିବା ଯେପରି କଠିନ, ବୃଷ୍ଟିର ଅଭାବରୁ କୃଷି ରକ୍ଷା କରିବା ତତୋଽଧିକ ସାଧ୍ୟାତୀତ । ସରକାରଙ୍କ ସାହାଯ୍ୟରେ ସର୍ବତ୍ର ଜଳସେଚନର ବ୍ୟବସ୍ଥା ଥିଲେହେଁ ବୃଷ୍ଟି ଅଭାବରୁ ଅନେକ ସ୍ଥଳରେ ଶସ୍ୟହାନି ହୋଇ-ଥାଏ । ଏତାଦୃଶ ବିବିଧ ହେତୁ ହେତୁ ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କରେ ଅଭାବ ଅନଟନର ଅଗ୍ନି ଜଳି ଉଠିଲେହେଁ ବାମଣ୍ଡାରେ ଏହାର ସଙ୍ଘଟନ ଅପେକ୍ଷାକୃତ ଅଳ୍ପ । କାରଣ ବାମଣ୍ଡାର ପ୍ରଜାମାନେ ବୃଷ୍ଟି ଜଳକୁ ସଞ୍ଚୟ ଓ ନଦୀ ପ୍ରବାହକୁ ଆବଦ୍ଧ କରି ରଖିବାର ଉପାୟ ରାଜାନୁଗ୍ରହରୁ ଶିଖି-ପାରି ଅଛନ୍ତି । ଏତଦ୍‌ଭିନ୍ନ ଅଭାବ ସମୟରେ, ରାଜାଦେଶ ବ୍ୟତୀତ "ରାଜ୍ୟର ଉତ୍ପନ୍ନ ଦ୍ରବ୍ୟ ବାହାରକୁ ଯିବାର ବ୍ୟବସ୍ଥା ନ ଥିଲା"—

"Resolution of the C. P. government (1897) says:— But save in Bamra, where the prohibition of export of food grains appears to have secured the immediate object with it was issued by the chief."

## ଜଳ ସେଚନର ବ୍ୟବସ୍ଥା

ଦେବଗଡ଼ର ଉତ୍ତରରେ ପର୍ବତ ବକ୍ଷରୁ ଯେଉଁ ଜଳପ୍ରବାହ ପତିତ ହେଉଅଛି ତାହା ଓଡ଼ିଶାରେ "ପ୍ରଧାନପାଟ" ନାମରେ ଖ୍ୟାତ । ଏହି ଜଳରାଶି ରାଜଧାନୀର ପ୍ରାନ୍ତ ଦେଇ କ୍ଷୁଦ୍ର ନଦୀ ଆକାରରେ ଚାଲି ଯାଉଥିବା ଦେଖି ରାଜା ବାସୁଦେବ ଏହି ପବିତ୍ର ଜଳର ସଦ୍‌ବ୍ୟବହାର ନିମନ୍ତେ ଦେବଗଡ଼ବାସୀଙ୍କ ସେବାରେ ନିଯୁକ୍ତ କଲେ । ଜଳକୁ ପରୀକ୍ଷା କରି ଜାଣିଲେ ଯେ ଏହା ବ୍ୟବହାର-ଯୋଗ୍ୟ ଓ ସ୍ୱାସ୍ଥ୍ୟକର । ସୁତରାଂ ପର୍ବତର ମୂଳଦେଶରୁ ଇଷ୍ଟକନିର୍ମିତ ଜଳପ୍ରଣାଳୀ ପ୍ରସ୍ତୁତ କରାଇ ଆଣି ଚୌବାଚ୍ଚା ଓ ନଳ ଦ୍ୱାରା ସହର ଭିତରେ ଜଳପ୍ରାପ୍ତିର ବ୍ୟବସ୍ଥା କରିଥିଲେ । ସେହି ଦିନଠାରୁ ପ୍ରଧାନପାଟର ଜଳ ତାଙ୍କ ରାଜଧାନୀର ସ୍ନାନ, ପାନ ଓ ରନ୍ଧନ କାର୍ଯ୍ୟରେ ନିୟୋଜିତ ହେଉଅଛି ।

ବାମଣ୍ଡର ଶସ୍ୟ କ୍ଷେତ୍ରର ଜଳାଭାବ ଦୂର କରିବା ନିମନ୍ତେ ସେ, ନାଗପୁରର ଅମ୍ବାଝରି ଜଳାଶୟ ଅନୁକ୍ରମେ, କଳାଞ୍ଜରି ଓ ମଲୁଆଳି ନାମକ ପାର୍ବତ୍ୟ ନଦୀଦ୍ୱୟର ଜଳସ୍ରୋତ ରୋଧ କରି ଅତିରିକ୍ତ ଜଳକୁ ବାହାର କରିଦେବା ପାଇଁ ଆନିକଟ୍ ବସାଇ ପ୍ରୟୋଜନମାୟ ଜଳ ସ୍ୱତନ୍ତ୍ର କେନାଲଦ୍ୱାରା ଶସ୍ୟକ୍ଷେତ୍ରରେ ସେଚନ କରାଇବାର ବ୍ୟବସ୍ଥା କରିଅଛନ୍ତି । ଅଭିଜ୍ଞ ସ୍ଥପତିର ସାହାଯ୍ୟ ନ ନେଇ ଏପରି ସୁବୃହତ୍ ବାରିବେଷ୍ଟନୀ କାର୍ଯ୍ୟକାରୀ କରାଇବାରେ ଯେ କେତେ କାୟିକ ଓ ମାନସିକ ଶ୍ରମର ପ୍ରୟୋଜନ ତାହା ସହଜରେ ଅନୁମେୟ । ରାଜା ହୋଇ ସାଧାରଣ ପ୍ରଜା ଓ ମୂଲିଆଙ୍କ ସଙ୍ଗରେ ମିଳିମିଶି ସ୍ୱୟଂ ଏହି ସମସ୍ତ କାର୍ଯ୍ୟ କରି ଆନନ୍ଦ ଉପଭୋଗ କରିବା ରାଜା ସୁଚଳଦେବଙ୍କର ବିଶେଷତ୍ୱ । ସେ "ସ୍ୱୟଂ ସର୍ବବିଧ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରି ଉତ୍କୃଷ୍ଟ ଫଳ ଲାଭ କରୁଅଛନ୍ତି ଏବଂ ଅନ୍ୟାନ୍ୟ ନରପତିମାନଙ୍କର ଆଦର୍ଶ ସ୍ଥାନୀୟ ହୋଇଅଛନ୍ତି" ବୋଲି କମିଶନରଙ୍କ ରିପୋର୍ଟରେ ଯେଉଁ ମନ୍ତବ୍ୟ ପ୍ରକାଶ କରିଅଛନ୍ତି ତାହା ନିମ୍ନରେ ଦିଆଗଲା—

"The Chief of Bamra Raja Sudhal Deo, C.I.E, continues to set a good example to his neighbours (other chiefs) by his personal interest in & attention to the business of his State in every department (Extract taken from the resolution of the local Govt.)' Sd. F. C. Anderson, Chief Secretary, to the Commissioner. C.P.

ବଳମ୍‌ରେ ନାନାପ୍ରକାର ଶାକସବଜୀ ଉତ୍ପନ୍ନ କରାଇବା ସଙ୍ଗେ ସଙ୍ଗେ ବିବିଧ ପ୍ରକାର ଫଳବୃକ୍ଷର ଗୁଣ୍ଡା ଓ କଲମ ଅଣାଇଁ ସେ ଆଦର୍ଶ ଉଦ୍ୟାନ ସ୍ଥାପନ କରିଥିଲେ । ପାଟଣା, ମାଲଦା ଓ ଦାକ୍ଷିଣାତ୍ୟରୁ ଭଲ ଭଲ ଜାତୀୟ ଆମ୍ବ ଆଣି ସେଠାରେ ରୋପଣ କରିଥିଲେ । ବିଶ୍ରାମ-ଭବନ ପାଇଁ ଅନ୍ୟୁନ୍ନତ ପାହାଡ଼ର ଚାଳୁ ଦେଶରେ ମଧ୍ୟେ ମଧ୍ୟେ ଯାଇ ଅବସ୍ଥାନ କରିବା ନିମନ୍ତେ ସୁନ୍ଦର ଗୃହ ପ୍ରସ୍ତୁତ କରାଇ ନିକଟବର୍ତ୍ତୀ ଶୈଳଖଣ୍ଡ ଉପରେ ଜନଗଣଙ୍କ ଧର୍ମ୍ମକର୍ମ୍ମର ସୁବିଧା ସକାଶେ ଯେଉଁ ଦେବାଳୟ ପ୍ରତିଷ୍ଠା କରାଇଥିଲେ ତାହା ଅଦ୍ୟାପି ବର୍ତ୍ତମାନ । ଉକ୍ତ ସ୍ଥାନରେ ପ୍ରସ୍ତର ଫଳକରେ ନିମ୍ନାଙ୍କିତ ସଂସ୍କୃତ ଶ୍ଳୋକ ଉଲ୍ଲେଖ ଅଛି :—

"ରାଜ୍ଞା ଶ୍ରୀବାସୁଦେବେନ ରାମଗୋବିନ୍ଦ ମନ୍ଦିରଂ ।
ଊନବିଂଶ ଶତଂସ୍ୟାନ୍ତେ ଖ୍ରୀଷ୍ଟାବ୍ଦେ ନିର୍ମ୍ମିତ ମସ୍ତା ॥ "

ଏତଦ୍‌ଭିନ୍ନ କ୍ଷେତ୍ରର ଉତ୍ପନ୍ନ ଦ୍ରବ୍ୟାଦି ରଖିବା ନିମନ୍ତେ ଗୋଲା-ଘର, ଭଣ୍ଡାର ଘର ଓ କର୍ମ୍ମଚାରୀଙ୍କ ରହିବା ନିମନ୍ତେ ପୃଥକ୍ ଭାବେ ପକ୍କା ଗୃହମାନ ପ୍ରସ୍ତୁତ ହୋଇ ରହିଅଛି ।

## ରାଜଧାନୀରେ ରାଜୋଦ୍ୟାନ

ଦେବଗଡ଼ରେ ରାଜା ସୁଢ଼ଳଦେବଙ୍କ ପ୍ରତିଷ୍ଠିତ ଉଦ୍ୟାନ ଗୋଟିଏ ଅପୂର୍ବ ଦୃଶ୍ୟ । ଏହି ଉଦ୍ୟାନ ପ୍ରସ୍ତୁତ କରିବାକୁ ଯେଉଁ ପରିମାଣର ଅର୍ଥବ୍ୟୟ, ଶିଳ୍ପଜ୍ଞାନ ଓ କାର୍ଯ୍ୟକାରୀ ବୁଦ୍ଧିର ପରିଚୟ ପ୍ରଦାନ କରା ହୋଇଅଛି ତାହା ସବୁବେଳେ ରାଜବୁଦ୍ଧିରେ ଦେଖାଯାଏ ନାହିଁ । ଉଦ୍ଭିଦ ତତ୍ତ୍ୱରେ ଉତ୍ତମ ଜ୍ଞାନ ନ ଥିଲେ ଏପରି ପରିପାଟୀରେ ଉଦ୍ୟାନ ପ୍ରସ୍ତୁତ କରାଇବା ସମ୍ଭବପର ନୁହେଁ ।

ଉଦ୍ୟାନର ନାନା ସ୍ଥାନରେ ହସ୍ତୀ, ଅଶ୍ୱ, ବ୍ୟାଘ୍ର, ହରିଣ ପ୍ରଭୃତି ଜୀବମୂର୍ତ୍ତି ଗଠିତ ଏବଂ ନାନା ଦେଶୀୟ ନରନାରୀଙ୍କର ମୂର୍ତ୍ତି ନାନା ପ୍ରକାର ଅବସ୍ଥାରେ ନାନା କାର୍ଯ୍ୟରେ ନିଯୁକ୍ତ ରହି ଦର୍ଶକଙ୍କ ମନର କୌତୂହଳୋଦ୍ଦୀପକ ହୁଅନ୍ତି । ମୂର୍ତ୍ତି କଳାର ନିର୍ମାଣ-ପାରିପାଟ୍ୟ ଏପରି ଯେ ସେମାନଙ୍କ ଅନ୍ତରର ଭାବଭଙ୍ଗୀ ଫୁଟି ବାହାରିବା ପରି ବୋଧ ହୁଏ । ଉଦ୍ୟାନର ଏକ ଅଂଶରେ ମାଦକସେବୀଙ୍କ ଅପୂର୍ବ ମଜଲିସ୍‌ର ଆଡ୍‌ଡା ଏବଂ ସେମାନଙ୍କର ଛିନ୍ନବସ୍ତ୍ର ଓ ଜୀର୍ଣ୍ଣଦେହ ମୂର୍ତ୍ତି ଆକାରରେ ଦେଖାଇ ଦିଆଯାଇଅଛି । ରାଜାଙ୍କର ସୁରା, ଅଫିମ ଓ ଗଞ୍ଜେଇ ସେବନ ପ୍ରତି ଏତେ ଘୃଣା ଥିଲା ଯେ ସେ ଜନସମାଜକୁ ଶିକ୍ଷା ଦେବା ନିମନ୍ତେ ଏହି ସମସ୍ତ ମୂର୍ତ୍ତି ପ୍ରସ୍ତୁତ କରାଇ ଦେଖାଇ ଦେଇଯାଇଛନ୍ତି । ଉଦ୍ୟାନର ଅନ୍ୟ ଅଂଶରେ ବିଶିଷ୍ଟ ମନୁଷ୍ୟ ମୂର୍ତ୍ତିଙ୍କ ମଧ୍ୟରେ ଝାନ୍‌ସିର ମନସ୍ୱିନୀ ରାଣୀ ଲକ୍ଷ୍ମୀବାଈ ବିରାଜିତା । ଉଦ୍ୟାନ ଭ୍ରମଣ ସମୟରେ ଜନୈକ ବ୍ରିଟିଶ କର୍ମଚାରୀ ଇଂରେଜ ରାଜଦ୍ରୋହୀର ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଥିବା କଥା ଇଙ୍ଗିତ କରିବାରୁ ରାଜା ସୁଢ଼ଳଦେବ ପ୍ରତ୍ୟୁତ୍ତରରେ କହିଥିଲେ ଯେ, ଏତଦ୍‌ଦ୍ୱାରା ଇଂରେଜ ସରକାରଙ୍କୁ ଲାଞ୍ଛନା ଦେବା ବା ଅବମାନନା କରିବା ତାଙ୍କର ଉଦ୍ଦେଶ୍ୟ ନୁହେ । ଜଣେ ଭାରତୀୟ କ୍ଷତ୍ରିୟ ଲଳନା କିପରି ଶୌର୍ଯ୍ୟ ଓ ବୀର୍ଯ୍ୟ ଦେଖାଇ ଏତେ ବଡ଼ ରାଜ ଶକ୍ତି ସମକ୍ଷରେ ଦଣ୍ଡାୟମାନ ହୋଇ ପାରିଥିଲେ, ତହିଁରେହିଁ ଅନୁପ୍ରାଣିତ ହୋଇ ସେ ଏହି ନାରୀମୂର୍ତ୍ତି ପ୍ରତିଷ୍ଠା କରି ଅଛନ୍ତି ।

ଉଦ୍ୟାନର ସମଗ୍ର ଅଂଶ ନାନା ଜାତୀୟ ପୁଷ୍ପଲତା ଓ କୁସୁମ-ଗୁଳ୍ମ-ପରିଶୋଭିତ ଏବଂ ନାନା ଦେଶରୁ ଆନୀତ ବିବିଧ ବୃକ୍ଷସୁଶୋଭିତ । ଆଉ ମଧ୍ୟ ବିବିଧ ଫଳପ୍ରଦ ବୃକ୍ଷ ବାରମାସ ଫଳ ପ୍ରଦାନରେ ରତ । ଉଦ୍ୟାନର ଏକ ଭାଗରେ ଶାକ୍‌ସବଜୀ ଓ ପନପରିବା ବଗିଚା ରଖା ଯାଇଛି । ତଦ୍ୱାରା ରାଜ ପରିବାରର ଓ ଅନ୍ୟାନ୍ୟ ବହୁ ଲୋକଙ୍କର ନିତ୍ୟ ପ୍ରୟୋଜନ ସାଧିତ ହୁଏ । ରାଜାଙ୍କର ଏହି ସମସ୍ତ କାର୍ଯ୍ୟାବଳୀ ଦର୍ଶନକରି ବାର୍ଷିକ ଶାସନ ବିବରଣୀରେ ଇଂରେଜ ସରକାର ତାଙ୍କୁ "ସଦୁତ୍ସାହୀ ଉଦ୍ଭିଦ ତତ୍ତ୍ୱଜ୍ଞ" ବୋଲି ସାଧୁବାଦ ପ୍ରଦାନ କରିଅଛନ୍ତି:—

' 'The state garden to which reference is made in the report deserves some mention. That at

Deogarh is of a specially high order. Raja himself is an enthusiastic gardener & is fond of experimenting with exotics." (Administration Report. 1895.)

ପୁନଶ୍ଚ ୧୮୯୮ ସାଲରେ କମିଶନର ଏ ସବୁ ବିଷୟରେ ମନ୍ତବ୍ୟ ପ୍ରକାଶ କରି ବିଶେଷ ପ୍ରଶଂସା କରି ଅଛନ୍ତି:—

"The Raja's gardens testify to the great personal interest he takes in horticulture······The Raja's effort to popularise the potato, are meeting with success." (Commissioner's report. 1898.)

## କାରାଶାସନ

ରାଜା ବାସୁଦେବ କୟେଦୀମାନଙ୍କ ନିମନ୍ତେ ପକ୍କା ଗୃହ ପ୍ରସ୍ତୁତ କରାଇ ସେମାନଙ୍କୁ ରଖାଇ ଥିଲେ । ଏହା ସନ୍ଦର୍ଶନରେ ବାର୍ଷିକ ଶାସନର ମନ୍ତବ୍ୟରେ ଯେଉଁ ପ୍ରଶଂସାଗର୍ଭିକ ବାକ୍ୟ ଲିଖିତ ଅଛି ତାହା ନିମ୍ନରେ ଦିଆଗଲା—

"Indeed it is no uncommon experience to find that the convicts are housed in much better buildings than those occupied by the Rajfamily."
(Ad. Report. 1899.)

ରାଜାଙ୍କର ସୁଚିନ୍ତିତ କାରା ଶାସନ ପଦ୍ଧତି ଅତି ସୁଶୃଙ୍ଖଳ । ସେ ବନ୍ଦୀମାନଙ୍କ ଦ୍ୱାରା ନାନାବିଧ ଦ୍ରବ୍ୟ ପ୍ରସ୍ତୁତ କରାଇବାର ସୂଚନା ଦେଇ ବହୁଅର୍ଥ ବ୍ୟୟକରି କୟେଦୀମାନଙ୍କୁ ଶିକ୍ଷା ଦେବାପାଇଁ ସୁଦକ୍ଷ କାରିଗର ନିଯୁକ୍ତ କରିଥିଲେ । ଫଳରେ ସେମାନେ ସୁଚାରେ ପ୍ରସ୍ତୁତ ସତରଞ୍ଜି, ଆସନ ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ତିଆରି କରିବାରେ ସମର୍ଥ ହୋଇ ପାରୁଥିଲେ ।

ଏତଦ୍‌ଭିନ୍ନ ସମ୍ବଲପୁର ହିତୈଷିଣୀର ମୁଦ୍ରଣ କାର୍ଯ୍ୟରେ ବନ୍ଦୀମାନେ ନିଯୁକ୍ତ ହୋଇଥିଲେ । ଏହି ଚିରନିନ୍ଦିତ ଓ ସର୍ବଜନପରିତ୍ୟକ୍ତ ବ୍ୟକ୍ତିଙ୍କୁ ଅର୍ଥକରୀ ଶିଳ୍ପଶିକ୍ଷା ଦାନର ବ୍ୟବସ୍ଥା ଦ୍ୱାରା କେତେ ଅପରାଧୀ ବ୍ୟକ୍ତି ସ୍ୱଭାବଗୁଣରୁ ଅବ୍ୟାହତି ଲଭକରି କାର୍ଯ୍ୟକ୍ଷମ ହୋଇ ଆତ୍ମ-

ପୋଷଣରେ ସମର୍ଥ ହୋଇ ଅଛନ୍ତି । ବନ୍ଦୀମାନଙ୍କୁ ବିବିଧ ପ୍ରଣାଳୀର କାର୍ଯ୍ୟରେ ନିଯୋଗ କରିଦେବା ଦ୍ୱାରା ଏବଂ ସେମାନଙ୍କର ରକ୍ଷଣାବେକ୍ଷଣର ଉତ୍କୃଷ୍ଟତା ଉପଲବ୍ଧି କରି ବ୍ରିଟିଶ ଶାସନକର୍ତ୍ତାଙ୍କ ରାଜକର୍ମଚାରୀ ବାରମ୍ବାର ପ୍ରଶଂସା କରି ଯାଇ ଅଛନ୍ତି ।:—

The arrangement appears to work very satisfactorily & the prisnors are employed on a variety of forms of labour. Their health is carefully attended to···" (Report. 1893.)

## ବାମଣ୍ଡାର ରାଜସଭା

ବାମଣ୍ଡାର ରାଜସଭା ସର୍ବଦା ସରଳ ଓ ଆଡ଼ମ୍ବରଶୂନ୍ୟ । ରାଜାଙ୍କର ଦକ୍ଷିଣପାର୍ଶ୍ୱରେ ବୃହତ୍ କାର୍ପେଟ୍ ବିସ୍ତାରିତ ଆସନରେ ବ୍ରାହ୍ମଣ ପଣ୍ଡିତମାନେ ଏବଂ ରାଜାସନ ସଂଲଗ୍ନ ବାମଭାଗରେ ଅମାତ୍ୟଗଣ, ଦରବାରର ସୌଷ୍ଠବ ଓ ଶୋଭାବର୍ଦ୍ଧନ କରିଥାନ୍ତି । ପଶ୍ଚିମ ଦିଗରେ ବିସ୍ତୃତ ରାଜକୀୟ ପୁସ୍ତକାଗାର (Personal Library) ବିଦ୍ୟମାନ ।

ରାଜା ବାସୁଦେବ ଦେଶ ପର୍ଯ୍ୟଟନ କାଳରେ ଏବଂ ପରେ ଟିକାୟତଙ୍କୁ ସଙ୍ଗରେ ରଖି ରାଜ୍ୟ ଶାସନ କାର୍ଯ୍ୟ ଶିକ୍ଷାକରାଇ ପରିଚାଳନାର ଅନେକାଂଶ ତାଙ୍କ ହସ୍ତରେ ନ୍ୟସ୍ତ କରିଥିଲେ । ସୁତରାଂ ବାମଣ୍ଡାର ଶାସନରେ ଦେୱାନ ଶବ୍ଦ ଶୁଣା ଯାଇ ନଥିଲା ।

"In the administration of Bamra the designation of Dewan is not & never has been known." ( Report. 1894)

ଅତି ଉଚ୍ଚ ଶିକ୍ଷା ଲାଭଦ୍ୱାରା ଏବଂ ମାନସିକ ଶକ୍ତିର ପରିଚାଳନା ଫଳରେ ସେ ପ୍ରକୃତ ରାଜପଦବୀ ଗ୍ରହଣଯୋଗ୍ୟ ଦକ୍ଷତାଲାଭ କରିଥିଲେ । ଇଂରାଜୀ ନ ଜାଣିଲେ ମଧ୍ୟ ଅନେକକାଳ ରାଜକାର୍ଯ୍ୟ ପରିଚାଳନାରେ ଲିପ୍ତଥାଇ ଇଂରାଜ ଶାସନକର୍ତ୍ତାଙ୍କ ସଙ୍ଗେ ଇଂରାଜୀରେ ଯେଉଁ ସବୁ ପତ୍ରାଳାପ ହେଉଥିଲା ସେହି ସମସ୍ତର ଗଠନ ପ୍ରଣାଳୀର ଇଙ୍ଗିତ ନିଜେ କରି ଦେଉଥିଲେ । ଯଦିଓ ଇଂରାଜୀରେ ଲେଖାପଢ଼ା କରିବା ନିମନ୍ତେ

ସ୍ୱତନ୍ତ୍ର ପ୍ରାଇଭେଟ୍ ସେକ୍ରେଟାରୀ ନିଯୁକ୍ତ ଥିଲେ; ତଥାପି ରାଜା ବାସୁଦେବ ସମସ୍ତ ଲେଖାର ତାତ୍ପର୍ଯ୍ୟ ଉତ୍ତମ ରୂପେ ହୃଦୟଙ୍ଗମ କରି ତହିଁର ଉତ୍ତରଦେବା ପ୍ରଣାଳୀ ଏବଂ କେଉଁଠାରେ ଉପଯୋଗୀ ଇଂରାଜୀ ଶବ୍ଦ ପ୍ରୟୋଗ କଲେ "ବକ୍ତବ୍ୟ ବିଷୟର ଶକ୍ତି ଓ ସୌନ୍ଦର୍ଯ୍ୟ ବୃଦ୍ଧି ପାଇବ" ତାହା ନିର୍ଦ୍ଦେଶ କରି ଦେଉଥିଲେ । କେବଳ ଶୁଣି ଶୁଣି ବୈଦେଶିକ ଭାଷାର ମର୍ମ୍ମ ଗ୍ରହଣ କରିବା ଏବଂ ସଂଶୋଧନାଦି କାର୍ଯ୍ୟ କରିବା ଏହିଭଳି ଖୁବ୍ କମ ଲୋକଙ୍କ ପକ୍ଷରେ ସମ୍ଭବପର ।

## ବାମଣ୍ଡାର ଡାକ ବିଭାଗ

ବାମଣ୍ଡାରାଜ୍ୟ ସହିତ ବାହାରର ସୁବିଧା ସମ୍ପର୍କ ରଖିବା ପାଇଁ ଏବଂ ରାଜ୍ୟ ଭିତରେ ଚିଠିପତ୍ର ଯାତାୟାତ ନିମିତ୍ତ ରାଜା ସାର ସୁଚଳ-ଦେବ ଡାକ ବିଭାଗର ସମସ୍ତ ଖର୍ଚ୍ଚ ବହନ କରି ଡାକ ବିଭାଗ ପରିଚାଳନା କରୁଥିଲେ । ରାଜ୍ୟର ବାହାରକୁ ପତ୍ର ପ୍ରେରଣ ନିମନ୍ତେ ଏକ ଅଣା ଓ ରାଜ୍ୟର ଅଭ୍ୟନ୍ତରରେ ଦୁଇ ପଇସାର ଟିକଟ ବ୍ୟବହାର କରାଯାଉଥିଲା । କିନ୍ତୁ କାଳପରେ ଗଭର୍ଣ୍ଣମେଣ୍ଟଙ୍କ "ପୁନଃ ପୁନଃ ପ୍ରସ୍ତାବ ଓ ଅନୁରୋଧରେ" ଏବଂ "କାର୍ଯ୍ୟର ସୁବିଧା ହେବାର ପ୍ରତ୍ୟାଶାରେ", ବିଶେଷତଃ, ପ୍ରଜାମଣ୍ଡଳୀଙ୍କର ବ୍ୟୟ ନିବାରଣର ଅନ୍ୟପନ୍ଥା ନ ଦେଖି ଅନିଚ୍ଛାସତ୍ତ୍ୱେ ସେ ଡାକ ବିଭାଗର ପରିଚାଳନାଭାର ଭାରତ ସରକାରଙ୍କ ହସ୍ତରେ ଅର୍ପଣ କଲେ :—

"The Raja has hitherto kept the postal arrangement within his state, entirely in his own hands.. The authorities of the Imperial Post Office Department are now prepared to take over the arrangements, undertaking to afford the same postal facilities & conveniences to the Public of Bamra State.... amalgamation of his local postal system with that of the Govt of India were brought to a happy conclusion & the new arrangements have been introduced with effect from 1st. Jan. 1895" (A.R. 1894)

## ମାଦକଦ୍ରବ୍ୟ ନିଷେଧ

ରାଜା ସୁଚ୍ଛଳଦେବ ମାଦକ ପର୍ଯ୍ୟାୟଭୁକ୍ତ ସମସ୍ତ ଦ୍ରବ୍ୟଗୁଡ଼ିକ ଉପରେ ଅତ୍ୟନ୍ତ ବିରୁଦ୍ଧ ଭାବାପନ୍ନ ଥିଲେ । କେବଳ ଔଷଧାଳୟ ଚିକିତ୍ସାଳୟମାନଙ୍କରେ ସେ ସବୁ ରଖା ହେଉଥିଲା ଏବଂ ରାଜାଦେଶ ଭିନ୍ନ ଏହା କୌଣସି ପ୍ରକାରେ ବାହାରୁ ଆମଦାନୀ ହେବାର ଉପାୟ ନ ଥିଲା । ଚିକିତ୍ସାକର ବ୍ୟବସ୍ଥା ଛଡ଼ା ଅନ୍ୟ କୌଣସି କାରଣରୁ. ରାଜଧାନୀ ଦେବଗଡ଼କୁ କେନ୍ଦ୍ର କରି ଦଶମାଇଲ ମଧ୍ୟରେ ସୁରା ସେବନ ଆଇନଦ୍ୱାରା ନିଷିଦ୍ଧ ଥିଲା । ତେବେ ନିମ୍ନ ଶ୍ରେଣୀର ଲୋକମାନଙ୍କ ପାଇଁ ପାର୍ବଣ ଉପଲକ୍ଷରେ ସୁରା ପ୍ରସ୍ତୁତ କରି ସେବନ କରିପାରିବାର ଅନୁମତି ଦିଆଯାଇ ଥିଲା । ଅନ୍ୟ ସମୟରେ କାହାରି ଗୃହରୁ ସୁରା ବାହାରିଲେ ସେ ରାଜଦଣ୍ଡରେ ଦଣ୍ଡିତ ହେଉଥିଲେ । ଅଭ୍ୟାସଯୁକ୍ତ ଅଫିମଖୋରମାନଙ୍କ ନାମ ପୁଲିସ ଥାନାରେ ଦର୍ଜ ହୋଇ ରହିଥିଲା । ଏମାନେ ନିୟମିତ ପରିମାଣର ଅଫିମ କ୍ରୟ କରି ସେବନ କରି ପାରୁଥିଲେ । ଏହି ଦୁର୍ନୀତି ନିବାରଣ ପାଇଁ ରାଜାଙ୍କୁ ବ୍ରିଟିଶ ରାଜ ସରକାର ପୁନଃ ପୁନଃ ଯେଉଁ ସାଧୁବାଦ କରିଅଛନ୍ତି ତହିଁର କିୟଦଂଶ ଦିଆଗଲା :—

"Bamra is the only state wich has succeeded in effectually dealing with this (smuggled ganja) difficulty, another testimony to the practical manag-ment of the Raja. (Resolution of the C.P. Govt. 1894.)

ଏତଦ୍‌ଭିନ୍ନ ଜଣେ ଖ୍ୟାତନାମା ଇଂରାଜ ଧର୍ମଯାଜକ ରାଜ୍ୟ ପରିଭ୍ରମଣ ଦ୍ୱାରା ଯାହା ଉପଲବ୍ଧି କରି ଲିପିବଦ୍ଧ କରିଯାଇ ଅଛନ୍ତି ତହିଁରୁ ସାମାନ୍ୟ ଅଂଶ ଉଦ୍ଧୃତ କରି ଦିଆଗଲା :—

"..the Raja, seeing how runious the opium habit is, has strictly prohibited its use by any, save those who have long been adicted to it..These can obtain the drug only in moderate quantity at certain Police stations, (three in number I believe); & no

one known to be adicted to opium, is eligible for employment in the state service.

The wise and enlightened policy of this Indian Prince, in thus preserving his people from a great danger is worthy of all praise, & should be published as an example to others. The British Govt. might learn a lesson from him in this matter. Its approval of his genral administration was signified not long ago by conferring the honour of knighthood ······ It would be a happy thing, if other Indian Princes & also the great British Govt. copied the example of this ruler······

(Sd/-P.E. Heberlet. Baptist. missionary.
Sambalpur. 26th April, 1897).

## ଟେଲିଫୋନ

ବାମଣ୍ଡା ରାଜ୍ୟର ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟସମ୍ପଦ, ମାନମର୍ଯ୍ୟାଦା, ବିଦ୍ୟାଗୌରବ ବୃଦ୍ଧି କରାଇବାହିଁ ରାଜା ବାସୁଦେବଙ୍କ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟଥିଲା । ସେହି ହେତୁରୁ ଗୋଟିକ ପରେ ଗୋଟିଏ ସଦନୁଷ୍ଠାନକୁ କାର୍ଯ୍ୟରେ ପରିଣତ କରିବାପାଇଁ ସେ ପ୍ରାଣପଣେ ଯତ୍ନ କରିଅଛନ୍ତି । ଦେବଗଡ଼ରେ ଓ ଅନ୍ୟାନ୍ୟ ପ୍ରଧାନ ସ୍ଥାନମାନଙ୍କରେ ଟେଲିଗ୍ରାଫ ସଂଯୋଗ କରିବା ନିମନ୍ତେ ସେ ଭାରତସରକାରଙ୍କ ସଙ୍ଗରେ ପତ୍ରାଳାପ ଆରମ୍ଭ କଲେ । କିନ୍ତୁ ବହୁପତ୍ରାଳାପ ପରେ ସେ ଯେତେବେଳେ ବୁଝିପାରିଲେ ଯେ ମାତ୍ର ବିଂଶ ବର୍ଷ ପର୍ଯ୍ୟନ୍ତ ଏହାକୁ ନିଜ ହସ୍ତରେ ରଖିପାରିବେ ଏବଂ ତାପରେ ତାହା ଗଭର୍ଣ୍ମେଣ୍ଟଙ୍କ ତତ୍ତ୍ୱାବଧାନକୁ ଚଳିଯିବ, ସେତେବେଳେ ସେ ବ୍ୟର୍ଥମନୋରଥ ନ ହୋଇ ଟେଲିଫୋନ ପ୍ରତିଷ୍ଠା କରିବା ନିମନ୍ତେ ସରକାରଙ୍କ ନିକଟରୁ ପ୍ରସ୍ତାବ ମଞ୍ଜୁର କରାଇଲେ । କହିବା ବାହୁଲ୍ୟ ଯେ ଟେଲିଫୋନର ଉଦ୍ଭାବନ ସେ ଘଟନାର କେବଳ ବିଂଶ ବର୍ଷ ପୂର୍ବେ ହୋଇଥିଲା ଏବଂ ସେ ପର୍ଯ୍ୟନ୍ତ ସଭ୍ୟଜଗତରେ ମଧ୍ୟ ଏହାର ବିଶେଷ ପ୍ରଚଳନ ହୋଇ ନ ଥିଲା । ୧୯୦୦ ଖ୍ରୀଷ୍ଟାବ୍ଦରେ ଏହିକାର୍ଯ୍ୟ ଆରମ୍ଭ

ହୋଇ ୧୯୦୧ ରେ କାର୍ଯ୍ୟ ସମ୍ପନ୍ନ ହେଲା । ପ୍ରଥମରେ ଗୋବିନ୍ଦପୁର (ବାମଣ୍ଡା), କୁଚିଣ୍ଡା, ସିରଢ଼ ଓ ଦେବଗଡ଼ରେ ପ୍ରତିଷ୍ଠିତ ହୋଇ ପୂର୍ବ-ଦିଗରେ ବଲମ୍ ଓ ବାରକୁଟ ପର୍ଯ୍ୟନ୍ତ ପ୍ରସାରିତ ହୋଇଥିଲା । ମଦୁଲପାଳି ଅଞ୍ଚଳରେ ଦସ୍ୟୁଭୟ ପ୍ରବଳଥିବାରୁ ପରେ ଢେଶେଇ ବହାଲରୁ ସେଠାକୁ ଗୋଟିଏ ଶାଖା ଲାଇନ ଯାଇଥିଲା । ଏହା ଭାରତରେ ଦୀର୍ଘତମ ଟେଲିଫୋନ ଲାଇନ ବୋଲି କଲିକତାର ସମ୍ବାଦ ପତ୍ର ଷ୍ଟେଟ୍ସ୍ମନ୍‌ରେ ପ୍ରକାଶିତ ହୋଇଥିଲା । ଏହାଛଡ଼ା ୧୯୦୩ ସାଲରେ ବହୁ ଧନ ବ୍ୟୟକରି ରାଜା ସୁଢ଼ଳଦେବ ପ୍ରଥମେ ମୋଟର କାର କ୍ରୟ କଲେ । ରାଜାଙ୍କର ବହୁମୁଖୀ ଉନ୍ନତ କାର୍ଯ୍ୟଜନିତ ପ୍ରଜାଙ୍କର ତଥା ସମଗ୍ର ରାଜ୍ୟର କାର୍ଯ୍ୟାବଳୀ ପର୍ଯ୍ୟବେକ୍ଷଣ କରି ବଙ୍ଗଦେଶର ସୁଲେଖକ ସ୍ୱର୍ଗୀୟ ବିଦ୍ୟାସାଗର ମହାଶୟଙ୍କର ଜୀବନୀ ଲେଖକ ଶ୍ରୀଚରଣ ବନ୍ଦୋପାଧ୍ୟାୟ ବଙ୍ଗ ଭାଷାରେ ଲେଖି ଅଛନ୍ତି—

"ବାମଣ୍ଡାର ଦିବାକର   ଗୁଣମୟ ଦଣ୍ଡଧର
ନ୍ୟାୟର ବିଗ୍ରହରେ, ବିଦ୍ୟାର ସାଗର ।
ତୁଳନା ନାହିଁକ ତବ   ଗଡ଼ଜାତେ କି କହିବ,
ଅତୁଳିତ ଭୂମି ଦେଶ ଦେଶାନ୍ତର ।
ନିଜ ଆଚରଣ ଗୁଣେ,   ଚିରଜୟୀ ସର୍ବଜନେ,
ଘୋଷେ କୀର୍ତ୍ତି ତବ, ଉଡ଼ିଶା-ଭୁବନେ ।
ମରଣେ ଜୀବନ ଦାନ,   କାର୍ଯ୍ୟ ତବ ସୁମହାନ,
ରଟେ ଯଶ ତବ, ଭାରତେ ନନ୍ଦନେ ।"

## ହସ୍ତୀ ଉପଦ୍ରବ

ବାମଣ୍ଡାର ବିସ୍ତୃତ ଅରଣ୍ୟରେ ହସ୍ତୀର ସଂଖ୍ୟା କମ ନୁହେ । ହସ୍ତୀମାନଙ୍କ ଦ୍ୱାରା ଅଧିକାଂଶ ସମୟରେ ପ୍ରଜାବର୍ଗଙ୍କର ପ୍ରଚୁର ପରିମାଣରେ ଶସ୍ୟ ନଷ୍ଟ ହୋଇଥାଏ । ଏପରି କି ସମୟ ସମୟରେ ଦନ୍ତାବଳ ଅତ୍ୟନ୍ତ ରୁକ୍ଷ ଆକାର ଧାରଣ କରି ଘର ଗ୍ରାମ ଉଜାଡ଼ି କରି ଥାଆନ୍ତି । ସୁତରାଂ ହସ୍ତୀମାନଙ୍କୁ ଖେଦା ଦ୍ୱାରା ଧରି ଅନ୍ୟାନ୍ୟ ସ୍ଥାନ ଅନୁରୂପ ରାଜସେବାରେ ନିଯୁକ୍ତ କରାଇ ରାଜା ସୁଢ଼ଳଦେବ ହସ୍ତୀର ଶକ୍ତିକୁ ନାନାବିଧ କାର୍ଯ୍ୟରେ ନିୟୋଗ କରାଉଥିଲେ । ସେମାନଙ୍କର ବିଶାଳ

ଶକ୍ତି ଦ୍ୱାରା ଅନେକ ସୁବୃହତ୍ ଶସ୍ୟ କେଦାର ପ୍ରସ୍ତୁତ କରାଇ ରାଜଧାନୀର ଅଟ୍ଟାଳିକା ନିର୍ମାଣର ଉପକରଣ ଆଦି ଆନୟନ ଓ ଉତ୍ତୋଳନ ଇତ୍ୟାଦି କାର୍ଯ୍ୟ କରାଇ ସଫଳ ଲାଭ କରିଥିଲେ । ଅଧିକ ସଂଖ୍ୟକ "ଗଜ ଧୃତ ହେବାରୁ ରାଜ୍ୟର ବାହାରେ ବିକ୍ରୟ ହୋଇ କିଛି କିଛି ଆୟ ପ୍ରାପ୍ତ ହୋଇ ରାଜକୋଷ ବୃଦ୍ଧି କରୁଥିଲେ ।"

Tha Raja is a Capable financier. He does a good deal of profitable trade with Cuttack. He has established a large printing press, which he informs me, pays well, and he derives some revenue from the slae of elephants captured in his extensive rests.

(Administration Report. 1892)

## ଗୋ ସେବା

ରାଜା ସୁଚଳଦେବ ଗୋବଂଶ ରକ୍ଷା ଓ ରାଜ୍ୟରେ ଉତ୍ତମ ଶ୍ରେଣୀର ଗୋବଂଶ ଉତ୍ପାଦନ ଓ ସେମାନଙ୍କର ଶ୍ରୀବୃଦ୍ଧି ସାଧନ ନିମନ୍ତେ ଅତ୍ୟନ୍ତ ମନଯୋଗୀ ଥିଲେ । ଭାଗଲପୁର ପ୍ରଭୃତି ଭିନ୍ନ ଭିନ୍ନ ସ୍ଥାନ ମାନଙ୍କରୁ ଗାଈ ଓ ବଳଦ ଅଣା ଯାଇ ରାଜକୀୟ କୃଷିକାର୍ଯ୍ୟ ପାଇଁ ବୃହତ୍ ବୃହତ୍ ବଳିଷ୍ଠ ବଳଦମାନ ରଖାହେଲେ ଏବଂ ରାଜଧାନୀର ଦୁଗ୍ଧ ନିମନ୍ତେ ଗାଈ ପ୍ରତିପାଳିତ ହେଲେ ।

ବାମଣ୍ଡା ରାଜ୍ୟର ଗୋଚର୍ମ ବିକ୍ରୟ ଠିକାଦାର ଦ୍ୱାରା କରା ହୋଇ-ଥିଲେ ନ୍ୟୂନାଧିକ ଆଠହଜାର ଟଙ୍କା ବାର୍ଷିକ ଆୟ ହେବାର ସମ୍ଭାବନା ଥିଲା । ମାତ୍ର ଏତଦ୍ୱାରା ଗୋଚର୍ମ ଲୋଭି ଠିକାଦାରଙ୍କ ପ୍ରରୋଚନାରେ ପଡ଼ି ଓ ଇତର ଲୋକମାନେ ଅଧିକ ମୂଲ୍ୟର ପ୍ରତ୍ୟାଶାରେ ପଡ଼ି ବିଷ ପ୍ରୟୋଗ କରି ସଚରାଚର ଗୋବଂଶ ଧ୍ୱଂସ କରିଥାନ୍ତି । ତେଣୁ ରାଜା ଗୋବଂଶ ରକ୍ଷା ନିମନ୍ତେ ଦୃଢ଼ପରିକର ହୋଇ ସ୍ୱାଭାବିକ ଭାବରେ ଯେଉଁ ଚର୍ମ ସଂଗୃହୀତ ହୋଇପାରିବ ତାହାହିଁ ରାଜ୍ୟର ଚର୍ମକାରମାନଙ୍କୁ ଗ୍ରହଣ କରିବା ନିମିତ୍ତ ଆଦେଶ ଦେଇଥିଲେ ।

## କୁଳିଚଲାଣ ବନ୍ଦ

ସାର ସୁଚଳଦେବଙ୍କ ରାଜତ୍ୱ କାଳରେ, ଅନ୍ୟାନ୍ୟ ସ୍ଥାନ ପରି କୁଲି ଚଲାଣ ବାମଣ୍ଡାରେ ପ୍ରବଳ ହୋଇ ଉଠିଥିଲା । କୁଲିଚଲାଣ ସର୍ଦାର-

ଗଣ ନିଶ୍ଚିତ ପ୍ରଜାଙ୍କୁ ନାନା ପ୍ରଲୋଭନ ଦେଖାଇ ପଲିଟିକାଲ ଏଜେଣ୍ଟଙ୍କ ମଞ୍ଜୁର ପାଇ ଗଣି ଗଣି କୁଲି ପ୍ରେରଣ କରିବାକୁ ଆରମ୍ଭ କଲେ । ଏହି ସମ୍ବାଦ ଅବଗତ ହୋଇ ରଜା ଏଜେଣ୍ଟ ବାହାଦୁରଙ୍କ ନିକଟକୁ ଘୋର ଅସନ୍ତୋଷ ଜ୍ଞାପନ କରାଇ ରାଜ୍ୟରେ ପ୍ରଚାର କରାଇ ଦେଲେ ଯେ, କୌଣସି ଆଡ଼କାଠିଆ ଅବା ଗୁପ୍ତଚର ଧରା ପଡ଼ିଲେ ପାଞ୍ଚଶତ ଟଙ୍କା ଅର୍ଥଦଣ୍ଡ ବା ଛଅମାସ କାରାବାସ ବା ଉଭୟ ଦଣ୍ଡଭୋଗ କରିବାକୁ ହେବ ଏବଂ ତାଙ୍କୁ ଧରାଇଦେବା ବ୍ୟକ୍ତି ପୁରସ୍କୃତ ହେବେ । ଏହି କାର୍ଯ୍ୟର ପ୍ରେରଣା ମଧ୍ୟ ତାଙ୍କର ଯଥେଷ୍ଟ ନ୍ୟାୟସଙ୍ଗତ ଥିଲା । କାରଣ ପାର୍ଶ୍ୱବର୍ତ୍ତୀ ରାଜ୍ୟ ମାନଙ୍କରୁ ଯେତେବେଳେ ଅସଂଖ୍ୟ ନରନାରୀ ବାମଣ୍ଡାକୁ ଆସି ଅର୍ଥୋପାର୍ଜ୍ଜନ ଓ ଆପଣା ଆପଣାର ଅନ୍ନସଂସ୍ଥାନ କରି ପାରୁଛନ୍ତି ସେତେବେଳେ ତାଙ୍କର ରାଜ୍ୟବାସୀ ବାହାରକୁ ଯାଇ ଖଟି ମୁଠେ ଖାଇବାକୁ ପାଇବା ପ୍ରୟୋଜନ ନ ଥିଲା । ବାମଣ୍ଡାର କର୍ଣ୍ଣଧାର ରାଜା ସାର ବାସୁଦେବଙ୍କ ସମସ୍ତ କାର୍ଯ୍ୟାବଳୀ ପର୍ଯ୍ୟାଲୋଚନା କରି କଟକ କଲେଜର ବଙ୍ଗାଳୀ ଅଧ୍ୟାପକ ଯାହା ଲିପିବଦ୍ଧ କରି ଯାଇଅଛନ୍ତି ତହିଁରୁ କିୟଦଂଶ ନିମ୍ନରେ ଉଦ୍ଧୃତ କରାଗଲା :—

"ଲୋକସଂଖ୍ୟା ଅଳ୍ପ ହେବାରୁ ମହାରାଜ ସ୍ୱରାଜ୍ୟରୁ ଅନ୍ୟତ୍ର କୁଲି ଚାଲାଣ ନିଷିଦ୍ଧ କରିଅଛନ୍ତି । ରାଜ୍ୟରେ ଯେପରି ଭାଟିଖାନା ନ ଥାଏ, ତାହା ତାଙ୍କର ଇଚ୍ଛା । ରାଜ୍ୟ ମଧ୍ୟରେ ବାରବନିତା ବାସ କରି ପାରନ୍ତି ନାହିଁ । ଦେବଗଡ଼ର (ଚତୁର୍ଦ୍ଦିଗରେ) ପାଞ୍ଚକୋଶ ମଧ୍ୟରେ ମଦର ଦୋକାନ ନାହିଁ । ···ସ୍ଥାନେ ସ୍ଥାନେ ଅରଣ୍ୟ ରକ୍ଷିତ ହୋଇଅଛି ସତ୍ୟ, କିନ୍ତୁ ପ୍ରଜାମାନେ ଆପଣାର ବ୍ୟବହାର୍ଯ୍ୟ କାଠ ବିନା ମୂଲ୍ୟରେ ନେଇ ପାରନ୍ତି । ଏହି ସମୁଦାୟ ଦେଶହିତକର କାର୍ଯ୍ୟ ନିମନ୍ତେ ମହାରାଜଙ୍କର ଆଳସ୍ୟ ନାହିଁ । ବୋଧହୁଏ, ପ୍ରଜାର ଚରିତ୍ର ଉନ୍ନତି ନିମିତ୍ତ ଏ ଦେଶୀୟ ଅଳ୍ପ ରାଜ୍ୟ ବାମଣ୍ଡାର ସମକକ୍ଷ ହୋଇ ପାରନ୍ତି, ମହାରାଜ ବୁଝି ଅଛନ୍ତି:—

ଯଦି ନ ସ୍ୟାନ୍ନରପତିଃ ସମ୍ୟଙ୍‌ନେତା ତତଃ ପ୍ରଜାଃ ।
ଅକର୍ଣ୍ଣଧାରା ଜଳଧୌ ବିପ୍ଲବେତେହ ନୌରିବ ॥"

## ବ୍ୟବସାୟ ବାଣିଜ୍ୟ

ବାମଣ୍ଡାର ଉତ୍ପନ୍ନ ଦ୍ରବ୍ୟକୁ ରାଜ୍ୟର ବାହାରେ ବାଣିଜ୍ୟର କେନ୍ଦ୍ରକରି ବିକ୍ରୟ କଲେ ବହୁ ଅର୍ଥ ସମାଗମର ସମ୍ଭାବନା ଅନୁଭବ

କରି ସାର ସୁଚ୍ଛଳଦେବ କଟକରେ ଗୋଟିଏ କେନ୍ଦ୍ର ସ୍ଥାପନ କଲେ । ମାତ୍ର ସେତେବେଳେ ବାଣିଜ୍ୟଦ୍ରବ୍ୟ ପ୍ରେରଣର ସହଜ ପଥ ନଥିଲା । ସ୍ଥଳପଥ ଅଧିକ ଦୂର; ସୁତରାଂ ଜଳପଥହିଁ ସହଜ ହେବ ମନସ୍ଥ କରି ତହିଁର ଉଦ୍‌ଭାବନ ନିମନ୍ତେ ପ୍ରବୃତ୍ତ ହେଲେ । ବାମଣ୍ଡାର ମଧ୍ୟଦେଇ ବ୍ରାହ୍ମଣୀ ନଦୀ ପ୍ରବାହିତ ହୋଇ ମହାନଦୀର ପୂର୍ବାଂଶ ଓ ବୈତରଣୀର ପଶ୍ଚିମାଂଶରେ ଯାଇ ସାଗରରେ ମିଳିତ ହେଉଅଛି । ମାତ୍ର ଏହି ପାର୍ବତ୍ୟ ନଦୀର ସ୍ରୋତ ଅଗଭୀର, ପୁଣି ଅନେକ ସ୍ଥାନରେ ଖର୍ଷଣକାୟ ପ୍ରସ୍ତର ଓ କ୍ଷୁଦ୍ର କ୍ଷୁଦ୍ର ପାହାଡ଼ ଥିବା ହେତୁ ନୌକା ଚଳାଚଳର ଉପଯୋଗୀ ନ ଥିଲା । ସୁତରାଂ ଡାଯ଼ନାମାଇଟ୍ ଦ୍ୱାରା ଅସଂଖ୍ୟ ସ୍ଥାନରେ ପର୍ବତ ଚୂର୍ଣ୍ଣକରି ନୌକା ଚଳାଚଳ ସହଜ ସାଧ୍ୟ କରାଇ ବ୍ୟବସାୟର ସୂତ୍ରପାତ କଲେ । କଟକ ସହର ଓ ଅନ୍ୟାନ୍ୟ ସ୍ଥାନରେ ବିକ୍ରୟ ନିମନ୍ତେ ପ୍ରଥମରେ ଶାଳ କାଠର ରପ୍ତାନୀ ଆରମ୍ଭ ହେଲା । ସଙ୍ଗେ ସଙ୍ଗେ ଡସି, ରାଶି, ସୋରିଷ ଇତ୍ୟାଦି ତୈଳବୀଜ ଦ୍ୱାରା ନୌକା ଭର୍ତ୍ତିହୋଇ କଟକ ଅଭିମୁଖରେ ଚାଲାଣ ହୋଇ ନୌକା ଫେରିବା ସମୟରେ କପଡ଼ା, ଲୁଣ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ଦ୍ରବ୍ୟ ସବୁ ବାମଣ୍ଡାର ବଜାର ନିମନ୍ତେ ଆମଦାନୀ ହେଲା । କଲିକତା ପୁନଃ ପୁନଃ ଗମନ କରି ବିଦେଶୀ ବ୍ୟବସାୟୀମାନଙ୍କର କାରବାରର ପଦ୍ଧତି ପରିଦର୍ଶନ କରି ତାଙ୍କର ରାଜବୁଦ୍ଧିରେ ଏହି ସମସ୍ତ ପନ୍ଥା ସ୍ଥାନ ପାଇଥିଲା । ତେଣୁ କିଛିଦିନ ପରେ ସେ କଲିକତାର ନିମତଲା ଘାଟରେ କାଠ କାରବାରର ପ୍ରସାର ନିମନ୍ତେ ସ୍ୱତନ୍ତ୍ର କେନ୍ଦ୍ର ପ୍ରତିଷ୍ଠା କରିଥିଲେ ।

## ସ-ମିଲ ସ୍ଥାପନ

ବାମଣ୍ଡା ରାଜ୍ୟର ଅକ୍ଷୟ ଅରଣ୍ୟ ସମ୍ପଦ ପ୍ରଚୁର ଧନାଗମର ଜନୟିତ୍ରୀ ବୋଲି ଅନୁଭବ କରି ରାଜା ସାର ସୁଚ୍ଛଳଦେବ ରେଲଓୱେ କମ୍ପାନୀକୁ ସ୍ଲିପର ସରବରାହ କରିବା ପାଇଁ ସ୍ଥିର ନିଶ୍ଚୟ କଲେ । ମାତ୍ର ସେ ଦେଖିଲେ ଯେ, ଦେଶୀ କରତିଆଙ୍କ ଦ୍ୱାରା ବୃକ୍ଷ ଛେଦନ ଓ ସ୍ଲିପର ପ୍ରସ୍ତୁତ କାର୍ଯ୍ୟ କରାଇଲେ ବିଶେଷ ଲାଭ ଜନକ ହେବ ନାହିଁ । ଅତଏବ ବିଲାତରୁ କରତକଳ [Saw-machine] ଇଞ୍ଜିନ ସହ ଅଣାଇ ଅଳ୍ପ ସମୟରେ ଏବଂ ଅଳ୍ପ ବ୍ୟୟରେ ଅଧିକ ପରିମାଣର ସ୍ଲିପର ତିଆରି କରି ପାରିଲେ ଆଶାନୁରୂପ ଲାଭର ସମ୍ଭାବନା ହୋଇପାରେ । ସୁତରାଂ

ନିଜର ବ୍ୟକ୍ତିଗତ ସମ୍ପତ୍ତିଭାବେ ତାଙ୍କର ଯାହାକିଛି ଥିଲା ଏବଂ ଯାହାକିଛି ସଂଗ୍ରହ କରିବାର ଉପାୟ ଥିଲା, ସେ ସମସ୍ତ ଏକତ୍ର କରି ବିଲାତରୁ ସ-ମିଲ୍ ଆଣି ବସାଇଲେ । ଦେଶୀୟ ମିସ୍ତ୍ରୀମାନଙ୍କୁ କଳ ଚଳାଇବାର ନିୟମ ପଦ୍ଧତି ଶିକ୍ଷା କରାଇ ନେଲେହେଁ ଜଣେ ଇଂରେଜ ମେକାନିକ ଦୀର୍ଘକାଳ ପର୍ଯ୍ୟନ୍ତ କାର୍ଯ୍ୟର ଶୃଙ୍ଖଳା ନିମନ୍ତେ ରାଜା ନିଯୁକ୍ତ କରି ରଖିଥିଲେ । ଏହା ଫଳରେ ଲକ୍ଷ ଲକ୍ଷ ଟଙ୍କା ହାଣ୍ଡି ପିଠିରେ ଲଦାହୋଇ ଆସୁଥିବା ଦେଖି ରାଜା ସାର ସୁତଳ ଦେବଙ୍କୁ ଲୋକେ ଧନ୍ୟ ଧନ୍ୟ କରୁଥିଲେ । ରାଜାଙ୍କର ଶତମୁଖୀ କାର୍ଯ୍ୟର ପାରିପାଟ୍ୟ ଦେଖି ବ୍ରିଟିଶ ଶାସକମାନେ ବାରମ୍ବାର ପ୍ରଶଂସା କରି ଯାଇଅଛନ୍ତି :—

There are large saw mills in the state and a considerable business is done. This brings much profit to the inhabitants of the state, who are enabled to earn good wages by this labour and by carting the timber to the Railway."

(Administration Report. 1898)

ରାଜା ବାସୁଦେବ ଅତ୍ୟନ୍ତ ଦୂରଦର୍ଶୀ ଥିଲେ; ଏହି ସ୍ଲିପାର ବ୍ୟବସାୟରେ ପ୍ରଚୁର ଅର୍ଥାଗମର ସମ୍ଭାବନା ବୁଝି ସେ ନିଜର ସଞ୍ଚିତ ସମସ୍ତ ଧନ ଏହି କାର୍ଯ୍ୟରେ ନିୟୋଗ କରିଥିଲେ, ଏବଂ ଏହାକୁ, ଘଟନା କ୍ରମେ, ରାଜ୍ୟର ଅଙ୍ଗୀଭୂତ ନ କରି "ରାଜକୁମାର ସ୍ଲିପାର ବ୍ୟବସାୟ" ବୋଲି ଅଭିହିତ କରିଥିଲେ । ଏତଦ୍ଦ୍ୱାରା ଷ୍ଟେଟର ଧନ ଭଣ୍ଡାରକୁ ମଧ୍ୟ ଅସୀମ ଅର୍ଥ ସମାଗମ ହୋଇଅଛି । ୧୯୦୨ ଖ୍ରୀଷ୍ଟାବ୍ଦରେ ବାର୍ଷିକ ଆୟ ଟ ୧,୭୨,୩୧୦୮ ବୋଲି ବର୍ଣ୍ଣିତ ହୋଇଥିଲା ।

ସ୍ଲିପାର ପ୍ରସ୍ତୁତର ଅନୁଷ୍ଠାନକୁ ମଧ୍ୟେ ମଧ୍ୟେ କାର୍ଯ୍ୟୋପଯୋଗୀ ସୁଦୂର ଅରଣ୍ୟ ପ୍ରାନ୍ତକୁ ଉଠାଇ ନିଆ ଯାଉଥିଲା । ସ୍ଲିପାର ପ୍ରସ୍ତୁତ କାର୍ଯ୍ୟ ବାମଣ୍ଡାରେ ବିସ୍ତୃତ ଭାବେ ହେଲେହେଁ "ଅରଣ୍ୟ ସମ୍ପଦ ଧ୍ୱଂସ ବା ସୁରକ୍ଷଣ ପ୍ରଣାଳୀର ବିରୁଦ୍ଧାଚରଣ ହେଉନାହିଁ" ବୋଲି ପୁନର୍ବାର ପ୍ରଶଂସାଗର୍ଭକ ମନ୍ତବ୍ୟ ରାଜ ସରକାର ଦର୍ଶାଇ ଅଛନ୍ତି :—

"The forests are the most valuable property possessed by the state, and I saw no signs that they are being overworked in a way detrimental to their conservation."

(Administration Report. 1899)

ଏହି କାରଣରୁ ଅଦ୍ୟାବଧି ବାମଣ୍ଡାର ଅରଣ୍ୟ ସୁରକ୍ଷିତ ହୋଇଅଛି । ଏହା ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କ ଅପେକ୍ଷା ବୃଦ୍ଧିପ୍ରାପ୍ତ ହୋଇ ଆଜି ସୁଦ୍ଧା ବାମଣ୍ଡାର ରାଜକୋଷକୁ ପ୍ରଭୂତ ଅର୍ଥାଗମ କରୁଅଛି ।

## ଓଡ଼ିଶା ସହିତ ଘନିଷ୍ଠତର ଯୋଗ

ପଡ଼ୋଶୀପ୍ରଦେଶର ଅମୂଳକ ଦାବି ଓ ଅତ୍ୟାଚାର ଯୋଗୁଁ ସେ କାଳରେ ଓଡ଼ିଆ ଭାଷାର ଅସ୍ତିତ୍ୱ ଲୋପ ହେବା ଉପରେ ଥିଲା । ରାଧାନାଥ ଓ ଫକୀର ମୋହନ ପ୍ରଭୃତିଙ୍କ ସଙ୍ଗେ ବାମଣ୍ଡାଧିପତି ସୁଚଳଦେବ ମ୍ରିୟମାଣ ଓଡ଼ିଆ ଭାଷାକୁ ନବଜୀବନ ଲାଭକରାଇ ମାତୃଭାଷାର ଗୌରବ ବୃଦ୍ଧି କରି ଯାଇଅଛନ୍ତି । ସେଥିପାଇଁ ଓଡ଼ିଆ ସାହିତ୍ୟସେବା କ୍ଷେତ୍ରରେ ବାସୁଦେବଙ୍କର ସ୍ଥାନ ଅତି ଉଚ୍ଚରେ । ଏହାଛଡ଼ା ସାହିତ୍ୟିକ ଜଳହ ସୂତ୍ରରେ ଏବଂ କଟକରେ ବ୍ୟବସାୟ କେନ୍ଦ୍ରର ସୂତ୍ରପାତ କରିବା ଫଳରେ ଓଡ଼ିଶାରେ ତାଙ୍କର ଯଶ ପ୍ରସାରିତ ହୋଇଥିଲା । ପରେ ଶ୍ରୀ ଚତୁର୍ଭୁଜ ପଟ୍ଟନାୟକଙ୍କ ସଙ୍ଗରେ ପରାମର୍ଶ କରି କଟକରୁ ଗୋଟିଏ ସମାଜ ସଂସ୍କାର ପାଇଁ 'ସଂସ୍କାରକ' ଏବଂ ଅନ୍ୟଟି ଧର୍ମସଂସ୍କାର ନିମନ୍ତେ 'ସେବକ' ନାମରେ ଦୁଇଖଣ୍ଡି ମାସିକ ପତ୍ରିକା ପ୍ରଚାର କରିଥିଲେ । ଏହି ଦୁଇ ପତ୍ରିକା ସ୍ୱକାର୍ଯ୍ୟ ସାଧନ ପୂର୍ବକ ଓଡ଼ିଶାର ବହୁତ କଲ୍ୟାଣ କରି ଯାଇଅଛନ୍ତି । ବିଶେଷତଃ କଟକର ବହୁ ସମ୍ଭ୍ରାନ୍ତ ବ୍ୟକ୍ତି ରାଜାଙ୍କର ନିମନ୍ତ୍ରଣ ଦ୍ୱାରା ଆକୃଷ୍ଟ ହୋଇ ବାମଣ୍ଡାର ଆତିଥ୍ୟ ଗ୍ରହଣ କରି ତଥା ରାଜାଙ୍କର ଆଗ୍ରହ ବ୍ୟବହାର, ରାଜ୍ୟରେ ଲୋକହିତକର କାର୍ଯ୍ୟାବଳୀ ଏବଂ ଅତ୍ମୀୟତାର ଆଦାନପ୍ରଦାନରେ ମୁଗ୍ଧ ହୋଇଅଛନ୍ତି । ଏବଂବିଧ ସମସ୍ତ କାର୍ଯ୍ୟାବଳୀରୁ ରାଜା ସାର ସୁଚଳଦେବ ଓଡ଼ିଶାରେ ସୁପରିଚିତ ।

୧୯୦୦ ସାଲରେ ରାଜା ପୁନର୍ବାର କଟକ ଓ ପୁରୀ ଯାତ୍ରା କଲେ । ତାଙ୍କର ପ୍ରଥମଯୌବନ କାଳରେ ସେ କଟକକୁ ଆସି ଅପରିଚିତ ଭାବେ

ଆପଣା କୌତୂହଳ ଚରିତାର୍ଥ କରିଥିଲେ ମାତ୍ର । କିନ୍ତୁ ବର୍ତ୍ତମାନ ତାଙ୍କର ଆଗମନ ବାର୍ତ୍ତା କଟକ ସାରା ପ୍ରଚାରିତ ହୋଇଥିଲା । ତାଙ୍କୁ ଅଭ୍ୟର୍ଥନା କରିବା ନିମନ୍ତେ ବହୁସଂଖ୍ୟକ ସଜ୍ଜନ ମଣ୍ଡଳୀ ଷ୍ଟେସନକୁ ଯାଇ ତାଙ୍କୁ ସମ୍ବର୍ଦ୍ଧନା କରିଥିଲେ । ତାଙ୍କର ଶୁଭାଗମନ ସମ୍ବାଦ ବହୁତ ବମ୍ବଶବ୍ଦ ସହକାରେ ଘୋଷିତ ହୋଇଥିଲା । ରାୟ ରାଧାନାଥ ବାହାଦୁରଙ୍କ ବାସଭବନ ଓ କଟକ ପ୍ରିଣ୍ଟିଂପ୍ରେସ୍ ଇତ୍ୟାଦି ସ୍ଥାନେ ସ୍ଥାନେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଏବଂ ବିଶିଷ୍ଟ ରାଜକର୍ମଚାରୀଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେ ସ୍ୱତନ୍ତ୍ରଭାବେ ସମ୍ବର୍ଦ୍ଧିତ ହୋଇଥିଲେ । ଏଥିରେ ସନ୍ତୁଷ୍ଟ ନହୋଇ କଟକବାସୀ କନିକା ରାଜାଙ୍କ ଆନୁକୂଲ୍ୟରେ ତାଙ୍କ କଟକ ବାସଭବନରେ ଯେଉଁ ସାନ୍ଧ୍ୟ-ସମ୍ମିଳନର ଆୟୋଜନ କରି ରାଜା ସାର ସୂରୀଲଦେବଙ୍କ ନିମନ୍ତେ କରିଥିଲେ, ସେପରି ତତ୍ପୂର୍ବେ କଟକରେ କେବେ ହୋଇ ନଥିବାର ସେ ସମୟର ସୁଧୀସମାଜଙ୍କ ମୁଖରୁ ପ୍ରକାଶ । ସେହି ଅନୁଷ୍ଠାନର ଶ୍ରୀବୃଦ୍ଧି ପାଇଁ କଲିକତାର ସରକସ୍, ନାନାବିଧ କ୍ରୀଡ଼ା କୌତୁକ, ଗୋଟିପୁଅ ନୃତ୍ୟ, ମଜଲିସ ଗୀତ ବାଦ୍ୟ ଦ୍ୱାରା ସୁଶୋଭିତ ହୋଇ ଉଦ୍ୟାନ ଭବନ ଆଲୋକମାଳାରେ ସଜ୍ଜିତ ହୋଇଥିଲା । ନାନାବିଧ ଅଗ୍ନିକ୍ରୀଡ଼ା (Fire-works) ଦ୍ୱାରା ସନ୍ଧ୍ୟାକାଶ ତାରକିତ ହୋଇ ଜ୍ୟୋତିର୍ମୟ ଆଲୋକରେ ଅପୂର୍ବ ସୌନ୍ଦର୍ଯ୍ୟ ବିସ୍ତାର କରିଥିଲା ।

କଟକରେ ଅବସ୍ଥାନ କାଳରେ ବହୁତ ସମ୍ଭ୍ରାନ୍ତ ବ୍ୟକ୍ତି ଓ କମିଶନର ପ୍ରଭୃତି ପ୍ରଧାନ ପ୍ରଧାନ ରାଜକର୍ମଚାରୀଙ୍କ ସଙ୍ଗେ ସାକ୍ଷାତ୍ କରିବା ନିମନ୍ତେ ରାଜା ସେମାନଙ୍କର ଆଳୟକୁ ଯାଇଥିଲେ । ଅନେକ ଶିକ୍ଷିତ ପଦସ୍ଥ ବ୍ୟକ୍ତି ଏବଂ ନାନାସ୍ଥାନର ରାଜା ଜମିଦାରଗଣ ରାଜାଙ୍କ ପ୍ରବାସ ଭବନରେ ଉପସ୍ଥିତ ହୋଇ ତାଙ୍କର ପରିଚୟ ଲାଭକରି ରାଜା ବାସୁଦେବଙ୍କ ଉଦାରତା ଓ ପରମ ଆତ୍ମୀୟତାରେ ମୁଗ୍ଧ ହୋଇଥିଲେ ।

ସେ କଟକର ରେଭେନ୍ସା କଲେଜ ଓ ତନ୍ନିକଟ ଛାତ୍ରାବାସ, ଏବଂ କଟକର ଅନ୍ୟାନ୍ୟ ସ୍କୁଲ ସମସ୍ତ ପରିଦର୍ଶନ କରି ଅତ୍ୟନ୍ତ ଆନନ୍ଦଲାଭ କରିଥିଲେ । ଟାଉନସ୍କୁଲର ପୋଷଣ ନିମନ୍ତେ ଚାରିବର୍ଷ କାଳ ବାର୍ଷିକ ବ୍ୟବସ୍ଥା କରି ଅନ୍ୟାନ୍ୟ ବିଦ୍ୟାଳୟ ସମୂହର ଛାତ୍ରମାନଙ୍କ ଆନନ୍ଦ ବର୍ଦ୍ଧନ ନିମନ୍ତେ ଟ୨୦୦୲, ଟ୧୦୦୲ ଏବଂ କେଉଁସ୍ଥାନରେ ଟ ୫୦୲ ପାରିତୋଷିକ ବିତରଣ କରିଥିଲେ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ବ୍ୟକ୍ତିଙ୍କ

ଅଭାବ ସମ୍ବାଦ ଅବଗତ ହୋଇ ସାହାଯ୍ୟ ଦାନ କରିଥିଲେ । ରାଜାଙ୍କ ଅକପଟ ଓ ସରଳ ବ୍ୟବହାର ଦର୍ଶନ କରି ମୁଗ୍ଧ ହୃଦୟରେ ଶତ ଶତ ବ୍ୟକ୍ତି ସାଧୁବାଦ କରିଥିଲେ । କଟକ ପରିତ୍ୟାଗ କାଳରେ ଷ୍ଟେସନରେ ଉପସ୍ଥିତ ବହୁ ସହସ୍ର ଲୋକଙ୍କ ନିକଟରୁ ବିଦାୟ ଗ୍ରହଣ କରି ସାର ସୁଚଳଦେବ ପୁରୀଧାମକୁ ଯାତ୍ରା କଲେ । ରାସ୍ତାରେ ଭୁବନେଶ୍ୱରରେ ଅବତରଣ କରି ଲିଙ୍ଗରାଜଙ୍କ ଦର୍ଶନ ଓ ଗଙ୍ଗବଂଶୀୟ କୀର୍ତ୍ତିସକଳ ପରିଦର୍ଶନ କରିଥିଲେ । ପୁରୀଧାମରେ ସମୁଦ୍ର ସ୍ନାନ, ପତିତପାବନ ଜଗନ୍ନାଥଙ୍କ ଦର୍ଶନ ଏବଂ ଅନ୍ୟାନ୍ୟ ଦେବଦେବୀଙ୍କର ଦର୍ଶନ ସମାପନ କରି ବ୍ରାହ୍ମଣ ପଣ୍ଡିତଙ୍କର ବିରାଟ ସଭା ଆହ୍ୱାନ କରିଥିଲେ । ପଣ୍ଡିତଗଣ ରାଜାଙ୍କର କାବ୍ୟ, ସାହିତ୍ୟ, ଅଳଙ୍କାର ଓ ଦର୍ଶନରେ ଅସାଧାରଣ ବ୍ୟୁତ୍ପତ୍ତି ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ଅନନ୍ତର ରାଜା ପଦ-ମର୍ଯ୍ୟାଦା ଅନୁରୂପ ପଣ୍ଡିତଙ୍କୁ ବିଦାୟ ଦେଇ ତତୋଽଧିକ ପରିତୁଷ୍ଟ କରିଥିଲେ ।

ତତ୍କାଳୀନ ପୁରୀର ରାଜା ଶ୍ରୀ ମୁକୁନ୍ଦଦେବ ସାର ବାସୁଦେବଙ୍କ ଆଗମନ ସମ୍ବାଦ ପାଇ ଜଣେ ପ୍ରଧାନ କର୍ମଚାରୀଙ୍କ ଦ୍ୱାରା ବାମଣ୍ଡା ରାଜାଙ୍କ ଠାରୁ ଏକ ଦତ୍ତକ ପୁତ୍ର ଗ୍ରହଣ କରିବାର ଅଭିପ୍ରାୟ ଜ୍ଞାପନ କଲେ । ଏହାର ଉତ୍ତରରେ ରାଜା ବାସୁଦେବ ପ୍ରକାଶ କଲେ ଯେ ପୁରୀ ରାଜାଙ୍କ ଲକ୍ଷାଧିକ ଟଙ୍କା ଋଣ ପରିଶୋଧ ଏବଂ ଦତ୍ତକର ନାବାଳକତ୍ୱ ଅତିକ୍ରାନ୍ତ ହେବା ପର୍ଯ୍ୟନ୍ତ ସମଗ୍ର ସମ୍ପତ୍ତିର ତତ୍ତ୍ୱାବଧାନ ଓ ଉନ୍ନତି ସାଧନର ଭାର ବାମଣ୍ଡାରାଜାଙ୍କ ଉପରେ ଯଦି ନ୍ୟସ୍ତ ହୋଇପାରେ, ତାହାହେଲେ ସେ ଏକ ପୁତ୍ର ଦାନରେ ସମ୍ମତ ହେବେ । ଏହା ଅନେକ ଦୂର ଅଗ୍ରସର ହୋଇ କେବଳ ସରକାରଙ୍କ ମଞ୍ଜୁରି ଗ୍ରହଣ କରିବାର ମାତ୍ର ବାକିଥିଲା; ପରେ କେତେକ ସ୍ୱାର୍ଥପର ଲୋକଙ୍କ ପ୍ରରୋଚନାରେ ପଡ଼ି ପୁରୀ ରାଜା ପଶ୍ଚାତ୍ପଦ ହୋଇଥିଲେ । ଏହି ପ୍ରସ୍ତାବ ସେତେବେଳେ କାର୍ଯ୍ୟକାରୀ ହୋଇ ନ ପାରିଲେ ମଧ୍ୟ ପରବର୍ତ୍ତୀ କାଳରେ ବାସୁଦେବଙ୍କ ଶୁଭେଚ୍ଛାରୁ ତାଙ୍କର ପୌତ୍ର ଦତ୍ତକରୂପେ ଗୃହୀତ ହୋଇ ପୁରୀର ରାଜସିଂହାସନରେ ଗଜପତି ମହାରାଜା ଶ୍ରୀ ରାମଚନ୍ଦ୍ର ଦେବ ନାମରେ ବର୍ତ୍ତମାନ ଉତ୍କଳରେ ଖ୍ୟାତ ହୋଇଅଛନ୍ତି ।

ରାଜା ବାସୁଦେବଙ୍କ ଅଭିପ୍ରାୟ କ୍ରମେ ପୁରୀରେ ଗୋଟିଏ ସନାତନ ଧର୍ମରକ୍ଷିଣୀ ସଭାର ପ୍ରତିଷ୍ଠା ହୋଇଥିଲା । ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ର-

ବୃଦ୍ଧଙ୍କୁ ସେ ମୁଦ୍ରିତ ପ୍ରଶଂସାପତ୍ର ସହ ସ୍ୱର୍ଣ୍ଣକୁଣ୍ଡଳ ଆଦି ପାରିତୋଷିକ ଦେବାର ବ୍ୟବସ୍ଥା କରିଥିଲେ । ରାଜା ନିଜେ ଉଚ୍ଚକୋଟୀର କବି ଥିଲେ ଏବଂ ନିଜେ ଗୁଣୀଥିବାରୁ ଗୁଣୀଜନଙ୍କର ଗ୍ରାହକ ଥିଲେ । ତାଙ୍କର ରାଜତ୍ୱକାଳରେ ବାମଣ୍ଡା "ବୁଧହଂସକେଳିସର" ରୂପେ ଲୋକ ମୁଖରେ ପ୍ରଚ୍ଚରିତ ହେଲା ।

## ରାଜଧର୍ମ୍ମ

ରାଜା ସାର ସୁଚଳଦେବ ବୈଷ୍ଣବ ଧର୍ମ୍ମାବଲମ୍ବୀ ହେଲେହେଁ ରାଜ ଭବନରେ କାଳୀମୂର୍ତ୍ତି ପ୍ରତିଷ୍ଠିତ ଅଛନ୍ତି ଏବଂ ଦେବୀଙ୍କର ପ୍ରତ୍ୟହ ପୂଜା ହୋଇଥାଏ । ଦୁର୍ଗୋତ୍ସବ ସମୟରେ ଷୋଡ଼ଶ ଦିନ ଏହି ଦେବୀମୂର୍ତ୍ତିଙ୍କର ମହାପୂଜା, ଚଣ୍ଡୀପାଠ ଓ ପ୍ରତ୍ୟହ ବଳିଦାନ ହୋଇଥାଏ । ମହିଷ ବଳିର ମଧ୍ୟ ପ୍ରଚଳନ ଥିଲା । ମାତ୍ର ଏହି ମହିଷ ବଳି ତାଙ୍କର ଇଚ୍ଛା ବିରୁଦ୍ଧ ଥିଲା ଏବଂ ଏହା ସେ ରହିତ କରି ଦେଇଥିଲେ । ରାଜା ଯେ କେବଳ ହିନ୍ଦୁ ପ୍ରଜାଙ୍କ ନିମନ୍ତେ ନାନାବିଧ ଗ୍ରାମ୍ୟ ଦେବତାଙ୍କ ରକ୍ଷଣର ସହାୟତା କରୁଥିଲେ ତାହା ନୁହେ । ସେ ରାଜ୍ୟର ମୁସଲମାନ ପ୍ରଜାଙ୍କ ନିମନ୍ତେ ମସ୍‌ଜିଦ ପ୍ରସ୍ତୁତ କରାଇ ଦେଇ ଅଛନ୍ତି । ନାରାୟଣ ଯେ ସର୍ବଭୂତରେ ସର୍ବାବସ୍ଥାରେ ପ୍ରକଟିତ, ଲୀଳାମୟ ଭଗବାନ ଯେ ପ୍ରାଣୀମାତ୍ରର ପ୍ରାଣରେ ପ୍ରକାଶିତ ଏହା ତାଙ୍କର ଜ୍ଞାନୋଜ୍ଜ୍ୱଳ ହୃଦୟକୁ ମୋହିତ କରୁଥିଲା । ତାଙ୍କର ରାଜ୍ୟ ପାଳନର ପଦ୍ଧତିରୁ ଏହା ପୂର୍ଣ୍ଣ ରୂପେ ଜ୍ଞାତ ହୁଏ, ଏବଂ ସେଥି ନିମିତ୍ତ ପୁରୁଷଶ୍ରେଷ୍ଠ ବାସୁଦେବ ନରସେବା କରି ନରଲୋକରେ ଅମରତ୍ୱ ଅର୍ଜ୍ଜନ କରି ଗୋଲୋକକୁ ଗମନ କରିଅଛନ୍ତି ।

## ଇଂରାଜ ରାଜଦରବାରରେ

ରାଜା ସୁଚଳଦେବ ରାଜ୍ୟଭାର ଗ୍ରହଣ କଲା ଦିନରୁ ମଧ୍ୟପ୍ରଦେଶର ଶାସନକର୍ତ୍ତାମାନେ ରାଜ୍ୟର ନିତ୍ୟ ନୂତନ ଉନ୍ନତି ଓ ଶ୍ରୀବୃଦ୍ଧି ସାଧନ ନିମନ୍ତେ ଏକ ମୁଖରେ ବର୍ଷ ବର୍ଷ ଧରି ପ୍ରଶଂସା କରି ଯାଇଅଛନ୍ତି । ଏହି ସମଗ୍ର କାର୍ଯ୍ୟ ସାଧନ ନିମନ୍ତେ ୧୮୮୯ ସାଲରେ ସେ ଇଂରେଜ ରାଜଦରବାରରୁ ସି. ଆଇ. ଇ. ( C. I E. ) ଉପାଧି ଲାଭ କଲେ । ସେ

ସମୟରେ ଏ ଅଞ୍ଚଳରେ ଏହି ଉପାଧିରେ କେହି ଭୂଷିତ ହୋଇ ନ ଥିଲେ । ଏହା ପରେ ୧୮୯୪ ଖ୍ରୀ: ରେ ସାର ଜନ୍ ଉଡ୍‌ବାର୍ଣ୍ଣ ଗଡ଼ଜାତ ଭ୍ରମଣ ଉପଲକ୍ଷରେ ଆସି ଯେଉଁ ଅଭିନନ୍ଦନର ପ୍ରତ୍ୟୁତ୍ତର ଦେଇଥିଲେ ତାର କିୟଦଂଶ ନିମ୍ନରେ ଦିଆଗଲା :—

"କର୍ଣ୍ଣେଲ ବୁଇ ଓ ପ୍ରିଷ୍ଟ ସାହେବଙ୍କ ମୁଖରୁ ଆପଣଙ୍କ ରାଜ୍ୟ-ପାଳନ ପଦ୍ଧତି ବିଷୟରେ ଯେଉଁ ପ୍ରଚୁର ଗୁଣଗାନ ଶୁଣିଥିଲି ଆଜି ମୁଁ ତାହା ସ୍ୱଚକ୍ଷୁରେ ଦେଖିଲି । ରାଜ୍ୟପାଳନ, ସୁଚିକିତ୍ସା ଓ ସୁଶିକ୍ଷା ଦାନର ବ୍ୟବସ୍ଥା ଯାହା ଦେଖିଲି ସମସ୍ତ ଅତି ଆନନ୍ଦକର······" ୧୮୯୫ ଅବ୍ଦ ବାମଣ୍ଡା ଇତିହାସରେ ଚିରସ୍ମରଣୀୟ, କାରଣ ଏ ବର୍ଷର ପ୍ରଥମ ଦିବସରେ ରାଜା ବାସୁଦେବ ସାମ୍ରାଜ୍ଞୀ ପ୍ରଦତ୍ତ ସମୁଚ୍ଚ ଗୌରବ ସୂଚକ କେ. ସି. ଆଇ. ଇ. (K. C. I. E.) ଉପାଧିରେ ପୁନର୍ବାର ଭୂଷିତ ହୋଇ ବାମଣ୍ଡା ତଥା ସମଗ୍ର ଉତ୍କଳର ମୁଖ ଉଜ୍ଜ୍ୱଳ କରିଅଛନ୍ତି । ସେ ଯୁଗରେ ଏ ଉପାଧିଲାଭ କମ୍ ସୁଗୁଣ ବା ଗୌରବର ପରିଚୟ ନ ଥିଲା ।"

## ହୀରକ ଜୁବିଲୀ ଓ ଦୁର୍ଭିକ୍ଷ

୧୮୯୭ ଖ୍ରୀ : ରେ ରାଜରାଜେଶ୍ୱରୀ ମହାରାଣୀ ଭିକ୍ଟୋରିୟାଙ୍କର ଦୀର୍ଘକାଳବ୍ୟାପୀ ରାଜତ୍ୱ ଉପଲକ୍ଷରେ ମହାସମାରୋହରେ ବାମଣ୍ଡାରେ ହୀରକ ଜୁବିଲୀ ପାଳିତ ହୋଇଥିଲା । ଏହି ଜୁବିଲୀରେ ବାମଣ୍ଡାର ରାଜା ପ୍ରଜା ମିଳିତ ହୋଇ ଭକ୍ତିପ୍ରୀତିପୂର୍ଣ୍ଣ କନକ ମଣ୍ଡିତ ସମ୍ଭାଷଣ ପତ୍ର ଇଂଲଣ୍ଡକୁ ପ୍ରେରଣ କରିଥିଲେ । ମହାରାଣୀଙ୍କର ଶୁଭକାମନା ନିମନ୍ତେ ଦେବାଳୟମାନଙ୍କରେ ପୂଜା ଅର୍ଚ୍ଚନା ତଥା ଦରିଦ୍ରନାରାୟଣ ଭୋଜନ ହୋଇଥିଲା । ରାଶିରାଶି ଅର୍ଥ ବ୍ୟୟକରି ନଗର ଆଲୋକମାଳାରେ ସଜ୍ଜିତ ହୋଇ ଅପୂର୍ବଶୋଭା ଧାରଣ କରିଥିଲା । ରାଜାଙ୍କ ଅସୁସ୍ଥତା ହେତୁ ଟିକାୟତ ସଚ୍ଚିଦାନନ୍ଦ ସଭାପତିରେ ଆସନ ଗ୍ରହଣ କରିଥିଲେ ଏବଂ ନୀଳମଣି ବିଦ୍ୟାରତ୍ନ ମହାରାଣୀଙ୍କର ଜୀବନ କାହାଣୀ ସଭାରେ ଆଲୋଚନା କରିଥିଲେ । ଏହି ଦିବସକୁ ଚିରସ୍ମରଣୀୟ କରିବା ନିମନ୍ତେ ରାଜା ସାର ବାସୁଦେବ ପ୍ରକାଣ୍ଡ ଅଟ୍ଟାଳିକା ନିର୍ମାଣ କରାଇଥିଲେ ଯାହାକି ବର୍ତ୍ତମାନ ସୁଦ୍ଧା 'ଜୁବିଲୀ ଘର' ବୋଲି ଦେବଗଡ଼ରେ ପରିଚିତ ।

୧୮୯୭ ସାଲରେ ଅନାବୃଷ୍ଟି ଫଳରେ ଚତୁର୍ଦ୍ଦିଗରେ ଦୁର୍ଭିକ୍ଷର ଦାବାନଳ ଜ୍ଵଳି ଉଠିଲା । ଏଥିରେ ଲକ୍ଷ ଲକ୍ଷ ଲୋକ ଆତ୍ମ ବିସର୍ଜ୍ଜନ କଲେ । ଦୁର୍ଭିକ୍ଷ ଦମନ ନିମନ୍ତେ ସ୍ଥାନେ ସ୍ଥାନେ ନଗରେ ନଗରେ ଅର୍ଥ ସଂଗ୍ରହ ହେଲା, ଏପରି କି ଭାରତର ପ୍ରଜାବର୍ଗଙ୍କର ଜୀବନ ରକ୍ଷା ନିମନ୍ତେ ଇଂଲଣ୍ଡର ଜନସାଧାରଣ ଅର୍ଥ ସାହାଯ୍ୟ କରିଥିଲେ । ଏହି ଉପଦ୍ରବର ଦୁର୍ଭିକ୍ଷ ସଙ୍ଗରେ ମହାମାରୀ ଉପସ୍ଥିତ ହୋଇ ଅତୀବ ଘୋରତର ହୋଇ ଉଠିଲା ।

ରାଜା ବାସୁଦେବ ଚିରଦିନ ପ୍ରଜାରକ୍ଷଣ ନିମନ୍ତେ ପ୍ରାଣପାତ କରି ଯାଇଅଛନ୍ତି । ସେଥି ନିମନ୍ତେ ସେ ଅବାଧ ବାଣିଜ୍ୟ ନୀତିର ପ୍ରତିକୂଳ ଥିଲେ । ରାଜ୍ୟର ଉତ୍ପନ୍ନଦ୍ରବ୍ୟ ସର୍ବାଗ୍ରେ ରାଜ୍ୟର ଅଭାବ ମୋଚନ କରି ପରେ ବାହାରକୁ ଚଲାନ୍ ହୋଇପାରିବ ଏହି ନୀତି ଇଂରାଜର ଅନୁଚିତ ବାଣିଜ୍ୟ ନୀତିର ସମ୍ପୂର୍ଣ୍ଣ ବିରୋଧୀ ହେଲେହେଁ ସେ ନିଜର ଅଭିପ୍ରେତ ପଥ ଦେଇ କାର୍ଯ୍ୟରେ ଅଗ୍ରସର ହେଉଥିଲେ, ଏବଂ ସେଥିପାଇଁ ଇଂରାଜ କର୍ତ୍ତୃପକ୍ଷ ତାଙ୍କୁ ପ୍ରଶଂସା କରିବାକୁ କୁଣ୍ଠାବୋଧ କରୁ ନଥିଲେ । ସେ ଦେଖିଲେ ଯେ, ଯେତେବେଳେ ରାଜ୍ୟର ଉତ୍ପନ୍ନ ଧାନ୍ୟ ଓ ଶସ୍ୟ ମହାଜନମାନଙ୍କ ନିକଟରେ ଗଚ୍ଛିତ ହୋଇଥିବା ସତ୍ତ୍ୱେ ପ୍ରଜାବର୍ଗ ଅନାହାରରେ ହାହାକାର କରୁଅଛନ୍ତି, ସେତେବେଳେ ସେ ଉକ୍ତ ଦ୍ରବ୍ୟ-ସକଳ ଋଣ ଓ କ୍ରୟ ସୂତ୍ରରେ ମହାଜନଙ୍କ ନିକଟରୁ ଗ୍ରହଣ କରି ଟ ୧୧ କୁ ୧୪ ସେର ହିସାବରେ ଚାଉଳ ବିକ୍ରୟ କରାଇବାକୁ ଲାଗିଲେ । ମାତ୍ର ଏହି ସମସ୍ତ ଖାଦ୍ୟ ପଦାର୍ଥ କ୍ରୟ କରିବା ନିମନ୍ତେ ପ୍ରଜାମଣ୍ଡଳୀଙ୍କ ହାତକୁ ଟଙ୍କା ଆସିବାର ଉପାୟ ଉଦ୍ଭାବିତ ହେବା ସର୍ବାଗ୍ରେ ଆବଶ୍ୟକ । ସୁତରାଂ ସେ ଅର୍ଥ ଉପାର୍ଜ୍ଜନର ପନ୍ଥା କରିଦେବା ନିମନ୍ତେ ରାଜବ୍ୟୟରେ ପୁଷ୍କରିଣୀ ଖନନ, ରାଜପଥ ନିର୍ମାଣ ଇତ୍ୟାଦି ପୂର୍ତ୍ତକାର୍ଯ୍ୟ ପ୍ରଚୁରଭାବେ କରାଇଥିଲେ । ଏତଦ୍‌ଭିନ୍ନ ରାଜସ୍ୱ ଆଦାୟ କାଳରେ ଫସଲ ପରିମାଣ ଦେଖି ଛଅ ଅଣା, ଆଠ ଅଣା ଓ ବାର ଅଣା ପର୍ଯ୍ୟନ୍ତ ରାଜକର ମାଫ କରିଦେବାର ଆଦେଶ ପ୍ରଚାର କରାଇ ଦେଇଥିଲେ । ଏହା ଫଳରେ ସର୍ବମୋଟ ଟ ୨୧୩୭୭।⁄ ଆଦାୟରୁ ମୁକ୍ତହୋଇ ପ୍ରଜାବର୍ଗ ସାର ବାସୁଦେବଙ୍କ ଦୀର୍ଘଜୀବନ ନିମନ୍ତେ ଭଗବାନଙ୍କ ଠାରେ ପ୍ରାର୍ଥନା କରିଥିଲେ ।

## ଦସ୍ୟୁ ଦମନ

ସାର ବାସୁଦେବଙ୍କ ରାଜତ୍ୱକାଳରେ ଦୁଇଥର ଦୀର୍ଘକାଳ ବ୍ୟାପୀ କ୍ଲେଶଭୋଗ କରିବାକୁ ପଡ଼ିଥିଲା । ଥରେ ବାହାଦୁର ଗଣ୍ଡ ଓ ଅନ୍ୟଥର ଅବଲି ଛବଲ ବହୁତ ପ୍ରବଳହୋଇ ଉଠିଥିଲେ । ଏମାନେ ଦିନବେଳେ ବଣାଇଁ ରାଜ୍ୟ ଅନ୍ତର୍ଗତ ପାହାଡ଼ ଗୁହାରେ ଲୁଚି ରହୁଥିଲେ ଏବଂ ରାତ୍ର କାଳରେ ବାମଣ୍ଡାରେ ଡକାୟତି କରୁଥିଲେ । ବହୁ ପରିଶ୍ରମ ଫଳରେ ଗ୍ଲଲଗଣ୍ଡ ଧରା ହୋଇଥିଲା ଏବଂ ପରେ ଅବଲ ଓ ଛବଲ ବ୍ରିଟିଶ ସରକାରଙ୍କର ସାହାଯ୍ୟ ବଳରେ ଧୃତ ହୋଇଥିଲେ ।

୧୮୯୯ ସାଲରେ ରାଜା ସୁଚଳ ଦେବ ମଧ୍ୟପ୍ରଦେଶର ବିଦ୍ୟାଳୟ ସମୂହର ପାଠ୍ୟପୁସ୍ତକ ନିର୍ବାଚନ ବୈଠକର ସଦସ୍ୟ ପଦରେ ନିଯୁକ୍ତ ହୋଇଥିଲେ । ତାଙ୍କ ଶରୀରର ଅସୁସ୍ଥତା ସତ୍ତ୍ୱେ ଆପଣା କର୍ତ୍ତବ୍ୟ ଲିପିବଦ୍ଧ କରି ଉକ୍ତ ବୈଠକକୁ ମନ୍ତବ୍ୟ ସମସ୍ତ ପ୍ରେରଣ କରୁଥିଲେ । ଏହି ସମୟରେ ପଲିଟିକାଲ ଏଜେଣ୍ଟ ଆର. ଇ. ଚେପମେନ ରାଜପ୍ରତିନିଧି ରୂପେ ବାମଣ୍ଡା ପରିଦର୍ଶନାର୍ଥେ ଆସି ରାଜାଙ୍କର ସୁଶାସନ ଓ ଶୃଙ୍ଖଳିତ ଭାବେ ରକ୍ଷିତ ବିଷୟ ସବୁ ଦେଖି ଗଭୀର ଆନନ୍ଦ ପ୍ରକାଶ କରି ରାଜା ସାର ସୁଚଳ ଦେବଙ୍କୁ ବହୁମୂଲ୍ୟର ଏକ ଯୋଡ଼ା ସାଲ ଓ ରାଜପରିଚ୍ଛଦ ଉପହାର ପ୍ରଦାନ କରିଥିଲେ ।

୧୯୦୨ ସାଲରେ ରାଜା ବାସୁଦେବ ପୀଡ଼ିତ ହେଲେ ଏବଂ ରୋଗର ଉପଶମ ଉପଲବ୍ଧି ନ କରି କଲିକତା ଯାତ୍ରାକଲେ । ସେଠାରେ କିଛି ପରିମାଣରେ ସେ ଆରୋଗ୍ୟ ହୋଇଥିଲେ । କିନ୍ତୁ ପୁନର୍ବାର ସେହି ରୋଗରେ ଆକ୍ରାନ୍ତ ହୋଇ ୧୯୦୩ ସାଲ ନଭେମ୍ବର ୧୯ ତାରିଖ ଦିବା ଦ୍ୱିପ୍ରହରରେ ମର୍ତ୍ତ୍ୟ ଜୀବନର ପୁଣ୍ୟକର୍ମ ସମାପ୍ତ କରି ଇହଧାମ ତ୍ୟାଗକଲେ ଏବଂ ସମଗ୍ର ଉତ୍କଳକୁ ଶୋକସାଗରରେ ଭସାଇ ଦେଇ ଗଲେ ।

## ଉପସଂହାର

ରାଜା ସାର ବାସୁଦେବ ସୁଚଳଦେବ K. C. I. E. ଆଜି ଇହ-ଧାମରେ ନାହାନ୍ତି ସତ୍ୟ କିନ୍ତୁ ସମଗ୍ର ଉତ୍କଳରେ ଯେଉଁ ଆଲୋକ ବିସ୍ତାର କରି ଯାଇ ଅଛନ୍ତି ତାହା ଚିରଦିନ ଅକ୍ଷୁଣ୍ଣ ରହିବ । ଏହି ପ୍ରଜାବତ୍ସଳ,

କର୍ମ୍ମୀର ତଥା ବାଣୀପୁତ୍ର ମହାପୁରୁଷଙ୍କର ଜୀବନ ବୃତ୍ତାନ୍ତ ଲେଖିବା ଯେ ଆମ୍ଭପରି ଅଜ୍ଞବ୍ୟକ୍ତି ପକ୍ଷେ କେତେଦୂର ଦୁଃସାହସର କାର୍ଯ୍ୟ ତାହା ସୁଧୀ ପାଠକ ବୃନ୍ଦ ତ୍ରୁଟି ଦୋଷାଦୋଷରୁ କ୍ଷମା ଦେବେ । ସୂଢ଼ଳଦେବଙ୍କର ଏତେ ଏତେ ସଦ୍‌ଗୁଣ, ଦୂରଦୃଷ୍ଟି ଓ ଉନ୍ନତିକର ବିଧାନରେ ଅଗ୍ରଗତି ଥିଲେହେଁ ବାସ୍ତବିକ ଆକ୍ଷେପର ବିଷୟ ଯେ ଏଭଳି ମହାତ୍ମାଙ୍କୁ ଆଧୁନିକ ଓଡ଼ିଶାରେ ପ୍ରାୟ କେହି ଜାଣନ୍ତି ନାହିଁ ।

ପରିଶେଷରେ ରାଜା ବାସୁଦେବ ତାଙ୍କର ରାଜତ୍ୱ ସମୟରେ କିପରି ରାଜ୍ୟ ଶାସନ କରୁଥିଲେ, ସେ ବିଷୟରେ ସେହି କାଳର ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ଦେଇଥିବା ପ୍ରଶଂସାପତ୍ର ଓ ତାଙ୍କର ତତ୍ତ୍ୱାବଧାନରେ ସେହି ସମୟର ଓଡ଼ିଶାର ସୁଯୋଗ୍ୟ ସନ୍ତାନ କବିବର ରାୟ ରାଧାନାଥ ପ୍ରମୁଖ ବ୍ୟକ୍ତି ମାନଙ୍କର ମନ୍ତବ୍ୟ ଦେଇ ରାଜା ସାର୍ ବାସୁଦେବ ସୂଢ଼ଳଦେବଙ୍କର ସଂକ୍ଷିପ୍ତ ଜୀବନ ବୃତ୍ତାନ୍ତ ସମାପ୍ତ କରାଗଲା ।

ଠାକୁର ଶ୍ରୀ ବୀରେନ୍ଦ୍ର ନାଥ ସିଂହ
ଦେବଗଡ଼
ତା ୧୭-୧୦-୧୯୫୫

## Self Governed Feudatories, Bamra Administration Report. 1891.

The state was visited by the commissioner & records the result of his visit. "I marched from Sambalpur to Deogarh & from Deogarh to Kuchinda & then to Jharsuguda & thus saw a great deal of the state. I found the people everywhere contended & satisfied with the Raja's rule. Though he was not with me, not a single complaint was made to me & I noticed there had been an immense increase in cultivation in recent years. Although I found that there had been immense improvement in the condition of the state since I last visited it some 12 years ago; I was greatly pleased to be able to renew my old friendship with the Raja, & to find that in the work of administration of his state he had thoroughly fulfilled the promise of his earlier years."

## General Review 1892

"He (Raja Sudhal Deb C.I.E.) supervises personally all branches of the state administration & has an intimate knowledge of its circumstances & needs ······ His officials are residents of his state ······ educated in the schools, which he has founded."

## Resolution of the C.P. Govt. 1893

This state is undoubtedly the most interesting of all the Chhattrisgarh Feudatories. It is the only one of which the administration has preserved any originality & character of its own ······ It seems a pity that so little is known beyond the limits of the

state, of the details of the Raja's administration. This example of the Results which can be attained by a Native Chief geverning according to his own methods without assistance from without & studying British institutions rather for the sake of comparision and judicious adaptation than of servile imitation, seems worthy of the careful attention not only of his brother chiefs but of the British adminstrators of Native States. ······ His entire abstention form direct taxation in the shape of pandhri & income tax is probably a wise measure, for, in a remote and backward state like Bamra, it is essential that every possible encouragement should be given to trade. His attention to the higher education of his subjects is also praiseworthy."

**Adm. Report of C.P. Govt. 1894.**

"Bamra continues to be a particularly bright instance of the success of an unaided native regime, & the good Govt. of this state procured for its chief the honour, hitherto unprecedented among the Feudatories of the C. Provines, of the decoration of K. C. I. E. in January last."

"Raja Sir Sudhal Deb K. C. I. E. was advanced to the dignity of a Knight Commandership of the most Eminent Order of the Indian Empire in the Honour's Gazette of 1st January 1895. He attended the investiture held in Calcutta on the 7th march where he was duly invested by His Excellency the Grand Master with the insignia of the 2nd class of the Order."

"The distinction thus conferred, is one in which the whole of the Chhatrishgarh Feudatories have reason to feel special pride as being without precedent in their history up to this time. It is the more gratifying as being a recognition, not of any conspicuous accidents of rank, position or wealth, but purely of Personal Merit. ·····"

**General Review 1895.**

"The Raja has to deal not only with limited resources which, however, he has always shewn ready to spend liberally in any direction that seems to promise a return in welfare of his subjects, but with an extremely backward, wild & apathetic population, I have every reason to belive that he is doing his utmost to educate & civilise."

"··· The advancement of the Raja to the dignity of K. C. I. E, on 1st January, 1895 & his subsequent investiture with the insignia at Calcutta, were noticed in the last year's review. The Prudent & Statesmanlike administration of which this was the reward continues to distinguish Raja Sir Sudhal Deb above his fellows & to be a Model for other States ·····"

"···The chief reports that owing to failure of crops he has decided to grant a substantial remission to the gauntias of his state in the current year. He rightly points out that the prosperity of his state is dependant on the prosperity of his subjects & this liberal measure will prove of much help to them.."

## General Remark. 1899.

"The state was visited by me for the first time....it was a pleasure to find that the administration is genrally maintained on effective lines. Much has been done towards opening out the state by construction of good surface roads, & this has resulted in a considerable extension of cultivation, whilst it has permitted the profitabl working of the state forests situated at some considerable distance from the railway."

The people seem prosperous & contended under the Raja's rule & the administration of most departments is systematically carried on."

## Genral Review. 1900

"Bamra was the only state in which there was any interference with trade; (the prohibition by the feudatory chief of Bamra of the exportation of the food grain continued in force throughout the year.)...."

"The prices of food-grains have been high throughout the year. Famine prices prevailed generally untill September or October, & at the end of the year the prices were still above normal. With some local exceptions, prices have been virtually governed from Bengal and detremined by the cost of importing rice from that province. It is by no means clear that the prices .prevailing in Bamra are an exception to this rule or that the Feudatory Chief's prohibition of exports had any material effect on the prices. In that state prices were certainly lower than in the neighbouring states in this Ageney......"

**Notes on feudatory States 1902.**

"The Bamra Rajkumar High school appears to be wellmanaged. It is reported that the minor chief of Bonai was sent to the school during the year under the orders of the Govt. of Bengal. A set of physical & chemical apparatus was provided for the school at a cost of Rs.5170/- & the teaching staff was strengthened during the year."

"The administration is one of the most successful among states managed by their own chiefs, & the Feudatory Chief has been ably assisted in the conduct of affairs by his eldest son Tikayet Satchidananda Deo. The Feudatory chief was invited to the coronation ceremonies at Delhi, but unfortunately was prevented by a serious illness from attending them."

---

## ରାୟ ରାଧାନାଥ ରାୟ ବାହାଦୁର ସୁଚଳଦେବଙ୍କ ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ଲିପିବଦ୍ଧ କରି ଯାଇଅଛନ୍ତି ସେ ମଧ୍ୟରୁ କେତେକାଂଶ:—

"ସୁଚଳଦେବଙ୍କୁ ଯେଉଁମାନେ ଉତ୍ତମରୂପେ ଜାଣନ୍ତି, ସେମାନେ ଏକ ବାକ୍ୟରେ ସ୍ୱୀକାର କରିବେ ଯେ, ରାଜା ସୁଚଳଦେବ ନିଜର ଅସାମାନ୍ୟ ପ୍ରତିଭାର ଅନୁରୂପ କ୍ଷେତ୍ର ଏବଂ ମନର ଅନୁରୂପ ଧନ ପାଇ ନାହାନ୍ତି । ଉପଯୁକ୍ତ କ୍ଷେତ୍ର ପାଇଥିଲେ ତାହାଙ୍କର ପ୍ରତିଭା ଜଗଦ୍‌ବ୍ୟାପିନୀ ହୋଇଥାନ୍ତା ସନ୍ଦେହ ନାହିଁ ।......"

"ବିଦାୟ ହୋଇ ରାଜଧାନୀ ତ୍ୟାଗ କରିବା ଉତ୍ତାରୁ ମାର୍ଗରେ ବାମଣ୍ଡା ସୀମା ମଧ୍ୟରେ ଯେତେଦୂର ଯିବାକୁ ହୋଇଅଛି, ସର୍ବତ୍ର ତାହାଙ୍କର ସୌଜନ୍ୟର ପ୍ରଭାବ ସମଗ୍ର ରାଜ୍ୟବ୍ୟାପୀ ବୋଲି ବୋଧହେଲା ଏବଂ ସମଗ୍ର ଜନପଦବାସୀ ସେହି ସୌଜନ୍ୟଦ୍ୱାରା ବଶୀଭୂତପ୍ରାୟ ବୋଧହେଲେ ।"

"ବାମଣ୍ଡାର ଆସ୍ଥାପୂର୍ଣ୍ଣ, ଆଡ଼ମ୍ବରଶୂନ୍ୟ, ସୁରୁଚିସମ୍ମତ ଆତିଥେୟତା ବାମଣ୍ଡାର ପକ୍ଷାନ୍ତର ମାତ୍ର । ଏଥରର ମୋହୋର ବାମଣ୍ଡାରେ ଅବସ୍ଥିତି ଆଶାତୀତ ଦୀର୍ଘ ହୋଇଥିଲା । ତିନିଦିନର ଅବସ୍ଥାନର ସଙ୍କଳ୍ପ ଥିଲା । କିନ୍ତୁ ମହାରାଜାଙ୍କ ଇଚ୍ଛାର ବଶମ୍ବଦ ହୋଇ ସାତ ଦିନ ରହିଲି । ଏରୂପ ଆଜି ସାତୋଟି ଦିନ ସମସ୍ତ ବର୍ଷମଧ୍ୟରେ ମୋ ଭାଗ୍ୟରେ ଘଟିବା ଦୁଷ୍କର ।"

"ଦେଶର ବଡ଼ଲୋକମାନଙ୍କୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ମିତଜଡ଼ିତ ଓ ଆତ୍ମରାଧିଷ୍ଠିତ । ଗୋଟିଏ ଦେଶୀୟ ଭାବ— ଅପରଟି ଇଉରୋପୀୟ ଭାବ । ଗୋଟିକରେ ଛତା ଯୋଡାର ବିଭ୍ରାଟ, ଅପରଟି ପତ୍ର ଲେଖିବା ଓ କାର୍ଡ଼ ପଠାଇବା । ମହାରାଜ ସୁଚଳଦେବ ଏହି ଦୁଇ ଶ୍ରେଣୀରୁ ବହିର୍ଭୂତ; ସକଳ ସମୟରେ ସବୁ ଅବସ୍ଥାରେ ସୁଲଭଦର୍ଶନ ।"

"ଜଣେ ସଙ୍ଗୀ ବନ୍ଧୁ କହିଲେ, କୃଷକମାନେ କେଉଁ ସମୟରେ କେଉଁ ଶସ୍ୟର ଚାଷ ଆରମ୍ଭ କରିବେ, ରାଜା ସୁଚଳଦେବଙ୍କ ନିକଟରୁ ତହିଁର ତତ୍ତ୍ୱ ଜାଣିବାକୁ ଆସିଅଛନ୍ତି । ମୁଁ ଏହା ଶୁଣି ପଚାରିଲି, ଚଷା

ରାଜାଙ୍କ ନିକଟକୁ ପୁଣି ଗୃହର ସମସ୍ତ ଜାଣିବାକୁ ଆସେ ! ବନ୍ଧୁ କହିଲେ, ବହୁଲୋକଙ୍କର ପ୍ରତିପାଳନ ଭାର ଯାହାଙ୍କ ଉପରେ, ସେ ଚିନ୍ତାର ଚିନ୍ତା ମହାଚିନ୍ତା । ଉପର୍ଯ୍ୟୁକ୍ତ ଘଟଣାଦ୍ୱାରା ବୁଝାଯିବ ଯେ, ଦେଶଭ୍ରମଣ ଓ ଲୋକପାଳନ ସୂତ୍ରରେ ବିଷୟଜ୍ଞାନ ବିଷୟରେ ରାଜା ଯେପରି ପଣ୍ଡିତ, ଶାସ୍ତ୍ର ବିଷୟରେ ରାଜା ସେହିପରି ପଣ୍ଡିତ ।”

“ମହାରାଜାଙ୍କର ଅଧିକାଂଶ କାର୍ଯ୍ୟ ବିଚକ୍ଷଣତା ଏବଂ ଶ୍ରମଶୀଳତାର ପରିଚାୟକ । ବ୍ୟସନ ଏହାଙ୍କୁ ସ୍ପର୍ଶ କରିନାହିଁ । ଅଧିକାଂଶ ରାଜାମାନଙ୍କ ଭଳି ନିଷ୍କର୍ମା ଭାଗ୍ୟବାନ ହୋଇ ସନ୍ତୁଷ୍ଟ ହୋଇ ରହିବା ଏହାଙ୍କର ପ୍ରକୃତିବିରୁଦ୍ଧ । ଦୁର୍ଭାଗ୍ୟକ୍ରମେ ଅଧିକାଂଶ ରାଜା ରାଜତ୍ୱ ଲାଭରେ ମନୁଷ୍ୟତ୍ୱ ହରାଇଥାଆନ୍ତି; ଏହି ସମସ୍ତ ମନୁଷ୍ୟମାନଙ୍କଠାରୁ ଦୈବାଧୀନ ରାଜତ୍ୱ ବାଦ୍‌ଦେଲେ କଅଣ ବାକି ଥାଏ ? ବାକି କେବଳ ଗୋଟିଏ ଅକର୍ମଣ୍ୟ ବ୍ୟସନୀ ବ୍ୟକ୍ତି । ସୁଚଳଦେବଙ୍କ କାର୍ଯ୍ୟାବଳୀ ଦେଖିଲେ ସ୍ୱୟଂ ଈର୍ଷା ସୁଦ୍ଧା ଏହା କହି ପାରିବ ନାହିଁ । ରାଜତ୍ୱ ବାଦ୍ ଦେଇ ସୁଦ୍ଧା ମହାରାଜ ବାସୁଦେବ ସୁଚଳଦେବ ନରରାଜ । ନରରାଜଙ୍କ ହସ୍ତରେ ଦୈବାଧୀନ ରାଜତ୍ୱ ନ୍ୟସ୍ତ ହେଲେ ଯେପରି ହେବାର ଉଚିତ, ବାସୁଦେବ ସେପରି ସମ୍ପୂର୍ଣ୍ଣରୂପେ ନ ହେଲେହେଁ ଅନ୍ତତଃ ବହୁପରିମାଣରେ ହୋଇ ଅଛନ୍ତି ଏବଂ ଏହିରୂପ ରାଜତ୍ୱ ସମୟରେ ରାଜ୍ୟରେ ଯେରୂପ ଉନ୍ନତି ହେବାର ଉଚିତ, ବାମଣ୍ଡା ସେରୂପ ଉନ୍ନତିରୁ ବଞ୍ଚିତ ହୋଇନାହିଁ ।”

“ଦେବଗଡ଼ରେ ସ୍ତାବକ ଗଣଙ୍କର କିରୂପ ସତ୍କାର ହୋଇ ଥାଏ ନିମ୍ନୋକ୍ତ ଘଟଣା ତାହାର ପରିଚୟର ସ୍ଥଳ । ବିଷୟବିଶେଷ ତର୍କ ବିତର୍କ ନିବନ୍ଧନ ମହାରାଜଙ୍କ ସହିତ ମୋର ମତଭେଦ ହୁଏ ।— ମହାରାଜ କହିଲେ,‘ଆପଣ ଯାହା କହିଲେ, ମୁଁ ତହିଁରେ ସମ୍ମତି ଦେଇ ପାରିଲି ନାହିଁ । ଆପଣଙ୍କ ମତ ଇଉରୋପୀୟ ଅନୁସାରେ ଗଠିତ । ଆପଣ ସାହେବୀ ମତର ଅଯଥା ପକ୍ଷପାତୀ !’ ମୁଁ ବିହିତ ଉତ୍ତର ଦେଇ କାର୍ଯ୍ୟାନୁରୋଧେ ବସାକୁ ଗଲି । ମୋର ଅନୁପସ୍ଥିତିରେ ମହାରାଜ ତାହାଙ୍କର ଜଣେ ପାର୍ଶ୍ୱଚରର ମତ ଜିଜ୍ଞାସା କଲେ । ପାର୍ଶ୍ୱଚର ଉତ୍ତରକଲା ‘ମଣିମାଁ ହୁମୁରୁ’ ଯେଉଁ ଆଜ୍ଞାକଲେ ତାହା ଠିକ । ସେ (ରାଧାନାଥ) ସାହେବ-ମାନଙ୍କ କଥାରେ ଭୁଲି ଅଛନ୍ତି । କେତେ ସାହେବ ଆସି ‘ଗୋଡ଼ତଳେ’ ପଡ଼ିଅଛନ୍ତି । ମହାରାଜ ଶୁଣି ଈଷତ୍ ହସି କହିଲେ, ତୁମ୍ଭେ ମୋର

ସନ୍ତୋଷାର୍ଥେ ମୋର ସମ୍ମୁଖରେ ଯେରୂପ କହିଲ ସମସ୍ତରେ ସାହେବର ସମ୍ମୁଖରେ କହି ନ ବସ 'ହଜୁର କେତେ ରଜା ଆପଣଙ୍କ ଗୋଡ଼ତଳେ ପଡ଼ ଅଛନ୍ତି' ।"

"ଉତ୍କୋଚ ଏବଂ ପୀଡ଼ନ ଅତ୍ୟାଚାରର ନିବାରଣ ବିଷୟରେ ବାମଣ୍ଡାର ରାଜଶାସନ ଆଶାତୀତ ଉନ୍ନତି ଲାଭ କରିଅଛି ବୋଲି ବୋଧହୁଏ । ରାଜଧାନୀରୁ ବହୁତ ଦୂରରେ ଏବଂ ମହାରାଜାଙ୍କ ଚକ୍ଷୁର ଅଗୋଚରରେ ଥାଇ ମଧ୍ୟ, ବାମଣ୍ଡାର କର୍ମଚାରୀଗଣ ନିଜକୁ ତାହାଙ୍କର ଦୃଷ୍ଟିର ପ୍ରବେଶବର୍ତ୍ତୀ ମନେ କରି ଅତି ସତର୍କ ହୋଇ କାର୍ଯ୍ୟ କରନ୍ତି । ପ୍ରାୟ ପ୍ରତ୍ୟେକ କର୍ମଚାରୀ ଜାଣନ୍ତି ଯେ,ଯେତେ ଗୋପନ ଭାବରେ ଅନ୍ୟାୟ କରି ନା କାହିଁକି ତାହା ମହାରାଜାଙ୍କର ଅଜ୍ଞାତ ରହିବ ନାହିଁ ଏବଂ ହେଲେ ତାର ନିଶ୍ଚୟ ପ୍ରାୟଶ୍ଚିତ୍ତ କରିବାକୁ ହେବ ।"

"ସୁଚଳଦେବ ନିଜେ ନିଜର ରାଜସ୍ୱ-ସଚିବ, ନିଜେ ନିଜର ପୂର୍ତ୍ତ-କର୍ମଚାରୀ । ତାଙ୍କର ରାଜସ୍ୱ ବିଭାଗ ଏରୂପ ସୁନିୟମ ଓ ସୁଶୃଙ୍ଖଳାର ସହିତ ପରିଚାଳିତ ଯେ, କୌଣସି କର୍ମଚାରୀ ଗୋଟିଏ ସୁଦ୍ଧା ପଇସା ଆତ୍ମସାତ୍ କରି ପାରନ୍ତି ନାହିଁ । ପୂର୍ତ୍ତକର୍ମରେ ନିଜେ ଅଶିକ୍ଷିତ ହୋଇ ମଧ୍ୟ, ନୈସର୍ଗିକ ବୁଦ୍ଧିଦ୍ୱାରା ରାଜ୍ୟ ପୂର୍ତ୍ତବିଭାଗର ସେ ଯେରୂପ ଉନ୍ନତି ସାଧନ କରିଅଛନ୍ତି, ଅନେକ ଶିକ୍ଷିତ ଏବଂ ଲବ୍ଧପ୍ରତିଷ୍ଠ ଇଞ୍ଜିନିୟାର ତାହା ଦେଖି ବିସ୍ମୟାବିଷ୍ଟ ହେବେ ।"

"ପୂର୍ଣ୍ଣ ମନୁଷ୍ୟର ଅଧିକାଂଶ ସଦ୍‌ଗୁଣ ସୁଚଳଦେବଙ୍କ ଠାରେ ବର୍ତ୍ତମାନ । ଏତେ ସଦ୍‌ଗୁଣର ସମବାୟ ଦେଶୀୟ ଲୋକଙ୍କ ମଧ୍ୟରେ ଆଜପର୍ଯ୍ୟନ୍ତ ମୋର ଦୃଷ୍ଟିପଥରେ ପଡ଼ି ନାହିଁ । ତାହାଙ୍କର କାର୍ଯ୍ୟ ଦେଖିଲେ ବୋଧହେବ ଯେପରି ବିଧାତା ଦେଶୀୟ ଶରୀରରେ ଇଉ-ରୋପୀୟ ମସ୍ତକ ସଂଯୋଗ କରିଅଛନ୍ତି । ସୁଚଳଦେବ ଯେପରି ଚିନ୍ତାଶୀଳ ସେହିପରି କାର୍ଯ୍ୟଶୀଳ । ଯେରୂପ ସରସ୍ୱତୀଭକ୍ତ ସେହିରୂପ ଲକ୍ଷ୍ମୀଭକ୍ତ । ପୁସ୍ତକାଳୟ ଓ ଶସ୍ୟାଗାର ଉଭୟର ପ୍ରତି ସମାନ ଆସ୍ଥା । ଏହି ବାଳମ କୁଠି ମହାରାଜାଙ୍କର ଲକ୍ଷ୍ମୀ ଓ ସରସ୍ୱତୀଙ୍କର ଉପାସନାର ସାମଞ୍ଜସ୍ୟ ସ୍ଥଳୀ । ଏଠାରେ ଦୁଇଟା ପ୍ରଶସ୍ତ ଶସ୍ୟକ୍ଷେତ୍ରର ନାମ ଲକ୍ଷ୍ମୀ ଓ ଅନ୍ନପୂର୍ଣ୍ଣା ।"

"ସଙ୍ଗରେ ଛତ୍ରଧାରୀ, ଚାମରଧାରୀ, ଶରୀରରକ୍ଷୀ ଇତ୍ୟାଦି ନଥିଲେ, ରାଜାର ବହିର୍ଗମନ ଯେଉଁପରି ଅନ୍ୟତ୍ର ସମ୍ଭବ ନୁହେଁ ଏଠାରେ ସେରୂପ ନୁହେଁ ; ଠିକ୍ ବିପରୀତ । କେବଳ ମାତ୍ର ଜଣେ ଭୃତ୍ୟ ସଙ୍ଗରେ ଥିଲା । ଫେରି ଆସିବା ସମୟରେ ପଥରେ ରୌଦ୍ରତାପ ନିବନ୍ଧନ ଛତା ଖୋଲିଲି । ମହାରାଜାଙ୍କ ଛତା ଖୋଲିବାକୁ ତାହାଙ୍କର ଭୃତ୍ୟକୁ ମୁଁ କହିଲି । ମହାରାଜ ସ୍ୱହସ୍ତରେ ଛତା ଖୋଲି ଧରିଲେ । ମୁଁ ଭାବିଲି କେବଳ ଭଦ୍ରତାର ଆତିଶଯ୍ୟ ହେତୁ ଏରୂପ କରିଅଛନ୍ତି । ଏହା ଭାବି କହିଲି, 'ମହାରାଜ, ଆପଣଙ୍କର ଯେରୂପ ଅଭ୍ୟାସ ଅଛି ସେରୂପ କରନ୍ତୁ ।'—'ମହାରାଜ କହିଲେ, 'ମୁଁ ତ ଠିକ ସେହିରୂପହିଁ କରୁଅଛି ; ଅନ୍ୟେ ଛତା ଧରିଲେ, ମୋର ସୁଖାନୁଭବ ହୁଏ ନାହିଁ ।' ଏହା ଗୋଟିଏ ସାମାନ୍ୟ ଘଟନା ସତ୍ୟ, କିନ୍ତୁ ସାମାନ୍ୟ ଘଟନାରୁ ଲୋକର ପ୍ରକୃତି ଜଣାଯାଏ ।"

"ମୁଁ ସମଗ୍ର ଓଡ଼ିଶା ଭ୍ରମଣ କରି ଏରୂପ ଗୋଟିଏ ସ୍ଥାନ ସୁଦ୍ଧା ଦେଖି ନାହିଁ । ପ୍ରକୃତିର ଶୋଭା ଓ ମନୁଷ୍ୟର ଅଧ୍ୟବସାୟର ଏରୂପ ସମାବେଶ ଦେଖି କେ ପ୍ରୀତ ନ ହୋଇବ ? କି ଭକ୍ତ, କି କବି, କି ବିଷୟୀ ସମସ୍ତଙ୍କ ପକ୍ଷରେ ଏହିସ୍ଥାନ ସମାନ ଉପଯୋଗୀ । ରାଜଧାନୀ ଦେବଗଡ଼ ଅପେକ୍ଷା ଏହି ସ୍ଥାନର ଜଳବାୟୁ ସମ୍ଭବତଃ ଅଧିକ ସ୍ୱାସ୍ଥ୍ୟକର । ଶୈଳପ୍ରାଚୀର ବେଷ୍ଟିତ ହେଲେହେଁ ଏଠାକାର ବିଶାଳ ଚତ୍ୱାଳ ପବନର ଅପ୍ରତିହତ ସଞ୍ଚାରରେ ସମ୍ୟକ୍ ଉପଯୋଗୀ । ବର୍ଷାକାଳରେ ଏହି ସ୍ଥାନ ଅତୀବ ମନୋହର ହୋଇଥାଏ । ଆକାଶରେ ଜଳଭରବନତ ଜଳଦମାଳ, କେକାମୁଖରିତ ଆସାରସିକ୍ତ ପ୍ରଫୁଲ୍ଲ ବନରାଜି, ଜଳଦ-ସମ୍ବଳିତ ଗୁପ୍ତାଲୋକରଞ୍ଜିତ ସଦ୍ୟବିଧୌତ ନୀଳ ଶୈଳଶ୍ରେଣୀ, ଦୂର ପ୍ରସାରିତ ଶ୍ୟାମାୟମାନ କୃଷିକ୍ଷେତ୍ର ଏବଂ କାନନଲକ୍ଷ୍ମୀର ଦର୍ପଣରୂପୀ ବିଶାଳ ହ୍ରଦର ଏକତ୍ର ସମାବେଶ ଦ୍ୱାରା ବର୍ଷାକାଳରେ ଏହି ସ୍ଥାନଟି ପ୍ରକୃତିର ଆଲେଖ୍ୟଶାଳାବତ୍ ପ୍ରତିଭାତ ହୋଇଥାଏ । ମେଘଦୂତ ବର୍ଣ୍ଣିତ ଅଧିକାଂଶ ଦୃଶ୍ୟହିଁ ଏହି ସ୍ଥାନରେ ସୁଲଭ ଏବଂ ଏହିରୂପ ସ୍ଥାନହିଁ ମେଘଦୂତ ପାଠର ସମ୍ୟକ୍ ଉପଯୋଗୀ ।"

"ଜୀବନରେ ନାନା ଶ୍ରେଣୀର ଲୋକଙ୍କ ସହିତ ଆଳାପ କରି ସୁଚଳ ଦେବଙ୍କର ନ୍ୟାୟ-ସମ୍ମିଳ ପ୍ରକୃତି ମୁଁ ଆଉ ଦେଖି ନାହିଁ । ମନରେ ସମସ୍ତ ବୃତ୍ତି ଅଛି, କିନ୍ତୁ ସମସ୍ତ ବୃତ୍ତିରହିଁ ସେ ପ୍ରଭୁ । କୌଣସି ବୃତ୍ତି ଉଚ୍ଛୃଙ୍ଖଳ

ହୋଇ ତାହାଙ୍କ ଉପରେ ପ୍ରଭୁତ୍ୱ କରିବ, ଏହା ତାଙ୍କ କୋଷ୍ଠୀରେ ନାହିଁ । କାର୍ଯ୍ୟପ୍ରଧାନ ଅଥଚ ଭାବପ୍ରଧାନ; ନାତିକ୍ରୋଧନ ଅଥଚ ନାତିସନ୍ତୁଷ୍ଟ । ସ୍ଥାନ ଦେଖି ଗଣନାଶୀଳ, ସ୍ଥାନ ଦେଖି ମୁକ୍ତହସ୍ତ । ଗର୍ବ ନ ଥାଇ ଯଥେଷ୍ଟ ଆତ୍ମମର୍ଯ୍ୟାଦା ଜ୍ଞାନ ଅଛି । କାହାପ୍ରତି ସ୍ନେହ କଲେ ବୋଲି ଯେ ତାହାର ଦୋଷ ପ୍ରତି ଅନ୍ଧ ହୋଇ ପଡ଼ିବେ, ଏପରି ନୁହେ । ଅଭିଯୋକ୍ତାକୁ ଗୋଟିଏ କର୍ଣ୍ଣ ଦେଇ ଅନ୍ୟ କର୍ଣ୍ଣଟି ଅଭିଯୁକ୍ତ ନିମନ୍ତେ ମୁକ୍ତ ରଖିବାରେ ସେ ସର୍ବଦା ସତର୍କ । ଅନ୍ୟର ଉପଦେଶପ୍ରାର୍ଥୀ ହୋଇ ସୁଦ୍ଧା ନିଜର ବୁଦ୍ଧିର ସ୍ୱାଧୀନତା ବିସର୍ଜ୍ଜନ କରିବାକୁ ସେ କଦାଚ ପ୍ରସ୍ତୁତ ନ ଥିଲେ । ସ୍ୱଚ୍ଛଳଦେବ ନ୍ୟାୟପର ଅଥଚ କଳପରି ନ୍ୟାୟପରାୟଣ ନ ଥିଲେ । ତାଙ୍କର ନ୍ୟାୟ-ବିଚାର ଜ୍ଞାନ ଓ କରୁଣାରେ ଜଡ଼ିତ ଥିଲା । ତାଙ୍କର ଯଶରେ ଅଭିରୁଚି ଥିଲା, କିନ୍ତୁ ସେ ଯଶୋରଙ୍କ ନ ଥିଲେ । କୃତ୍ରିମ ଉପାୟରେ ଯଶଃ ପ୍ରଚାର ନିମନ୍ତେ କିମ୍ବା ଅଳୀକ ଯଶର ଆକାଙ୍‌କ୍ଷା ତାଙ୍କର ନଥିଲା । ଆମୋଦରେ ବିତୃଷ୍ଣା ନ ଥିଲା । ଜୀବନରେ ସର୍ବବିଧ ଉନ୍ନତିର ମୂଳ ଯେ ସ୍ୱାସ୍ଥ୍ୟ, ତାହାର କ୍ଷତି ନ କରି ଯେତେଦୂର ଆମୋଦ ସମ୍ଭବ, ତାହାର ସୀମା ସେ ଅତିକ୍ରମ କରୁ ନ ଥିଲେ । ଧର୍ମ୍ମ, ଅର୍ଥ, କାମ ପ୍ରତି ତାଙ୍କର ସମାନ ଦୃଷ୍ଟି, କାହା ପ୍ରତି ଏକାସକ୍ତି ନ ଥିଲା; କାହାରି ପ୍ରତି ଔଦାସୀନ୍ୟ ମଧ୍ୟ ନଥିଲା । ଫଳତଃ:—

ଧର୍ମ୍ମାର୍ଥ କାମା ସମମେବ ସେବ୍ୟାଃ
ଯଃ ଏକସକ୍ତଃ ସ ନରୋ ଜଘନ୍ୟଃ ।

ସ୍ୱଚ୍ଛଳଦେବଙ୍କ ଜୀବନ ଏହି ଉକ୍ତିର ଗୋଟିଏ ପ୍ରକୃଷ୍ଟ ନିଦର୍ଶନ । ଇଂରାଜୀ ଭାଷାରେ ଅନଭିଜ୍ଞ ହୋଇ ମଧ୍ୟ ଇଉରୋପୀୟ ମାନଙ୍କ ନିକଟରେ ସ୍ୱଚ୍ଛଳଦେବଙ୍କ ପ୍ରତିଷ୍ଠା କମ ନ ଥିଲା । ଗଭର୍ଣ୍ଣମେଣ୍ଟଙ୍କଠାରୁ ସେ ଯେଉଁ ଉଚ୍ଚ ଉପାଧି ଲାଭ କରିଅଛନ୍ତି ସେହି ଉପାଧି ସେ ପ୍ରତିଷ୍ଠାର ପରିମାପକ । କିନ୍ତୁ ଏହା ବୋଲି ଇଉରୋପୀୟମାନଙ୍କ ସହିତ ଦେଶୀୟ ଲୋକଙ୍କର ପ୍ରକୃତ କିରୂପ ସମ୍ବନ୍ଧ ଏବଂ ସେମାନଙ୍କ ସହିତ ସଂସ୍ରବ ରଖିବା ଅପରି-ହାର୍ଯ୍ୟ ଓ ସ୍ଥଳ ବିଶେଷରେ ବାଞ୍ଛନୀୟ ହେଲେ ସୁଦ୍ଧା ସେ ସଂସ୍ରବର ସୀମା କେଉଁଠାରେ, ଏହା ବିସ୍ମୃତ ହେବା ଲୋକ ସେ ନୁହନ୍ତି । ଏହି ସୀମା ବିସ୍ମୃତ ହୋଇ ଏବଂ ରାଜନୈତିକ "ମିତ୍ରୁବନ୍ଧୁ" ଶବ୍ଦର ଆକ୍ଷରିକ ଅର୍ଥ ଗ୍ରହଣ କରି, ଅନେକ ଅପରିଣାମଦର୍ଶୀ ନବ୍ୟଶିକ୍ଷାଭିମାନୀ ଦେଶୀୟ ରାଜା ସମୟ ସମୟରେ ଲାଞ୍ଛିତ ଓ ବିପନ୍ନ ହୋଇଅଛନ୍ତି ।"

"ସାଧାରଣତଃ ଗଡ଼ଜାତ ରାଜବୃନ୍ଦଙ୍କର ରୁଚି ଦେଖି ଅନେକ ସମୟରେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ନିର୍ଜ୍ଜନବାସ, ସ୍ୱାସ୍ଥ୍ୟକର ବାୟୁ ସେବନ ଏବଂ ସୁନ୍ଦର ପ୍ରାକୃତିକ ଦୃଶ୍ୟ ଦର୍ଶନର ସୁବିଧା ଏମାନଙ୍କର ପୈତୃକ ଅଛି ଓଡ଼ିଶାରେ ଏରୂପ ସୁବିଧା ଆଉ କାହାରି ନାହିଁ । ଏରୂପ ସୁବିଧା ଇଉରୋପୀୟମାନଙ୍କ ହସ୍ତଗତ ହେଲେ, ସେମାନେ ପୂର୍ଣ୍ଣମାତ୍ରାରେ ତାହା ଉପଭୋଗ କରିବାକୁ ଯତ୍ନବାନ ହୁଅନ୍ତି । ପର୍ବତର ଶୀର୍ଷ କିମ୍ବା ତଟଦେଶ, ସମୁଦ୍ରବେଳା, ମହାରଣ୍ୟ କିମ୍ବା ପ୍ରଶସ୍ତ ନଦୀତୀରରେ ନିର୍ଜ୍ଜନ ସୁଦୃଶ୍ୟପୂର୍ଣ୍ଣ ଓ ସ୍ୱାସ୍ଥ୍ୟକର ସ୍ଥାନ ନିର୍ବାଚନ କରି ସେଠାରେ ଗୃହ ନିର୍ମ୍ମାଣ କରାଇ ତହିଁରେ ଅବସ୍ଥିତି କରିଥାନ୍ତି । ବୃତ୍ତିଶ୍ୱର ଇଉରୋପୀୟମାନଙ୍କର କଥା ଦୂରେ ଥାଉ, ଯେଉଁମାନେ ସେବାଜୀବୀ ସେମାନେ ମଧ୍ୟ ଏହିରୂପ ସୁଖ ସମ୍ଭୋଗର ସୁବିଧା କରି ନେବା ନିମନ୍ତେ ଆଗ୍ରହାନ୍ୱିତ । ଅର୍ଥହୀନ ଭାବୁକଗଣ ପର୍ବତ ମହାରଣ୍ୟ ଦେଖିବାମାତ୍ରେ କାର୍ଯ୍ୟରେ ନ ହେଉ, କଳ୍ପନାରେ ସେ କୁଟୀରବାସର ସୁଖ ଭୋଗ କରନ୍ତି । କିନ୍ତୁ ସାଧାରଣ ଗଡ଼ଜାତର ବ୍ୟବସ୍ଥା ଦେଖି କଣ ପ୍ରତୀତ ହୁଏ ? ଉଲ୍ଲିଖିତ ପ୍ରକାର ଉଚ୍ଚ-ସୁଖଭୋଗର ସମସ୍ତ ଉପକରଣ ବିଦ୍ୟମାନ ଥାଉଁ ଥାଉଁ ଏମାନେ ଅନ୍ଧକାରବୃତ ପବନସଞ୍ଚାରଶୂନ୍ୟ ଆବର୍ଜ୍ଜନାପୂର୍ଣ୍ଣ ନଗରର ନିଭୃତତମ ପ୍ରଦେଶରେ ଗ୍ରାମ୍ୟସୁଖରେ ଆକଣ୍ଠ ନିମଗ୍ନ । ... ... ... ... ...
କିନ୍ତୁ ବାମଣ୍ଡାର ମହାରାଜାଙ୍କର ରୁଚି ସ୍ୱତନ୍ତ୍ର । ତାଙ୍କର ପାଣ୍ଡିତ୍ୟ ତାଙ୍କ ରୁଚିର ପ୍ରସୂତି । ସୁରୁଚିର ସନାତନ ଗୁରୁ କାଳିଦାସ, ମୁରାରି ପ୍ରଭୃତିଙ୍କ ଭକ୍ତ ହୋଇ ଗ୍ରାମ୍ୟ ଆମୋଦର ପକ୍ଷପାତୀ ହେବା ତାଙ୍କ ପକ୍ଷରେ ଅସମ୍ଭବ । ମହାରାଜ ସମ୍ପ୍ରତି ସମ୍ବଲପୁରରେ ନିର୍ଜ୍ଜନବାସ ନିମନ୍ତେ ଗୋଟିଏ ଗୃହ ପ୍ରସ୍ତୁତ କରାଇଅଛନ୍ତି । ଗୃହଟି ଗୋଟିଏ କ୍ଷୁଦ୍ର ଶୈଳର ସାନୁଦେଶରେ ଅବସ୍ଥିତ ଓ ସୁପ୍ରଣାଳୀରେ ଗଠିତ ।"

"ବିଘ୍ନ ସାଧାରଣ ଲୋକଙ୍କୁ ଭଗ୍ନୋଦ୍ୟମ ଓ ପଶ୍ଚାତ୍‌ପଦ କରେ । କେବଳ ଏକମାତ୍ର ପ୍ରତିଭା ପ୍ରତିକୂଳ ଦୈବ ହସ୍ତରୁ ସିଦ୍ଧିକୁ ଛଡ଼ାଇ ଆଣିବାକୁ ସମର୍ଥ । ସୁଚଳଦେବ ଆଦୌ ବିଘ୍ନଦ୍ୱାରା ଭଗ୍ନୋତ୍ସାହ ହେବାର ପାତ୍ର ନ ଥିଲେ । ସୁଶିକ୍ଷା ଓ ଦେଶପର୍ଯ୍ୟଟନଦ୍ୱାରା ସେ ଉତ୍ତମରୂପେ ବୁଝିଥିଲେ ଯେ, ବିଜ୍ଞାନ ସାହାଯ୍ୟରେ ସର୍ବବିଧ ବୃହତ୍ତର ସୁଅନୁଷ୍ଠାନରେ କୃତକାର୍ଯ୍ୟ ହେବା ସମ୍ଭବ । ସେଥିଯୋଗୁଁ ତାଙ୍କର ମୃତିକା ସୁସମୟରେ

ସର୍ବବିଧ ସୁଅନୁଷ୍ଠାନ ପ୍ରତି ଅଗ୍ରସର ହେବାକୁ ଉଚିତ ବା ପଶ୍ଚାତ୍ପଦ ହେଉ ନ ଥିଲା । ସେ କାର୍ଯ୍ୟର ପରିମାଣ ଓ ନିଜର ଶକ୍ତି ସାମର୍ଥ୍ୟ ଓଜନ କରି କାର୍ଯ୍ୟରେ ହାତ ଦେଉଥିଲେ ଏବଂ ସର୍ବଦା କୃତକାର୍ଯ୍ୟତାର ଆନନ୍ଦ ଉପଭୋଗ କରି କପରି ସୁଖୀ ହେବାକୁ ହୁଏ, ଏହା ସେ ଜାଣିଥିଲେ ।"

"କର୍ମ୍ମବୀର ବାସୁଦେବ ଇହଜଗତରୁ ଅନ୍ତର୍ହିତ ହୋଇଅଛନ୍ତି । ସେ ନବ୍ୟ ଶିକ୍ଷାପ୍ରାପ୍ତ ରାଜା ନ ଥିଲେ । ଇଦାନୀନ୍ତନ ନବ୍ୟଶିକ୍ଷିତ ଅଧିକାଂଶ ରାଜାଙ୍କ ମତିଗତି ପ୍ରତି ଦୃଷ୍ଟିକଲେ, କିଏ ଅନୁଭବ ନ କରିବ ଯେ ବାସୁଦେବ ନବ୍ୟଶିକ୍ଷାରୁ ବଞ୍ଚିତ ହୋଇ ରକ୍ଷା ପାଇଅଛନ୍ତି । ନବ୍ୟ ରୀତି ଅନୁସାରେ ଶିକ୍ଷିତ ନ ହେଲେ ସୁଦ୍ଧା ବାସୁଦେବ ଯେ କେବଳ ସୁଶିକ୍ଷିତ ଥିଲେ ତାହା ନୁହେ, ସେ ପଣ୍ଡିତ ଥିଲେ । ସଂସ୍କୃତ ଓ ଓଡ଼ିଆ ଭାଷାରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା, ଏବଂ ବଙ୍ଗଳା ଓ ସାମାନ୍ୟତର ଇଂରାଜୀ ମଧ୍ୟ ଶିକ୍ଷା କରିଥିଲେ । ନବ୍ୟ ଶିକ୍ଷା ଲାଭ ନ କଲେହେଁ, ନବ୍ୟ ଶିକ୍ଷାର ସମଗ୍ର ସୁଫଳ ତାଙ୍କର ଆୟତ୍ତ ହୋଇଥିଲା । ନବ୍ୟ ସଭ୍ୟତାର ବିଡ଼ମ୍ବନାରୁ ନିଜକୁ ଓ ରାଜ୍ୟକୁ ରକ୍ଷା କରିବା ବିଷୟରେ ସେ ସର୍ବଦା ସତର୍କ ଥିଲେ ଏବଂ ତାହାର ଚାକଚକ୍ୟରେ ମୁଗ୍ଧ କିମ୍ବା ପ୍ରତାରିତ ନ ହୋଇ, କେବଳ ତାର ସାରବସ୍ତୁକୁ ନିଜର ସତ୍ତ୍ୱ ସଙ୍ଗେ ଏକୀଭୂତ କରିବାରେ ପ୍ରୟାସୀ ହୋଇଥିଲେ । ପାଶ୍ଚାତ୍ୟ ସଭ୍ୟତାର ଯାହା କିଛି ଶ୍ରେୟସ୍କର, ନିଜର ଆୟ ଓ ସାମର୍ଥ୍ୟ ଅନୁସାରେ ତତ୍ ସମୁଦାୟକୁ ରାଜ୍ୟମଧ୍ୟରେ ପ୍ରବର୍ତ୍ତିତ କରାଇ ତାହାର ସୁଫଳ ପ୍ରଜାଙ୍କର ଚକ୍ଷୁଷ ପ୍ରତ୍ୟକ୍ଷ ଏବଂ ହୃଦୟଙ୍ଗମ କରାଇଥିଲେ । ବାମଣ୍ଡା ରାଜ୍ୟର ରାଷ୍ଟ୍ରଯନ୍ତ୍ର ଓ ଶାସନ-ପ୍ରଣାଳୀ ସେ ଯେଉଁ ରୀତିରେ ଗଠିତ କରି ଆସିଥିଲେ ଏବଂ ରାଜ୍ୟର ଧନାଗମର ଉପାୟସକଳ ଉଦ୍ଭାବନ କରିଥିଲେ, ଯେଉଁମାନେ ବାମଣ୍ଡା ଥରେ ମାତ୍ର ଯାଇ ଅତି ବାହ୍ୟିକ ଓ ସ୍ଥୂଳଭାବରେ ପ୍ରତ୍ୟକ୍ଷ କରି ଅଛନ୍ତି, ସେମାନେ ଆଜ ଏ ବର୍ଣ୍ଣନା ଅତିରଞ୍ଜିତ ବୋଲି ମନେ କରିବେ ନାହିଁ । ବାମଣ୍ଡା ରାଜ୍ୟର ପ୍ରତ୍ୟେକ ବିଭାଗରେ ଏବଂ ପ୍ରତ୍ୟେକ ଅଂଶରେ ବାସୁଦେବଙ୍କର ବ୍ୟକ୍ତିତ୍ୱର ମୁଦ୍ରା ଦେଦୀପ୍ୟମାନ ବୋଲି ଅନୁଭବ କରିବେ । ବାସୁଦେବ-ସେବିତ ବାମଣ୍ଡାରେ Order and progress (ପ୍ରାଚୀନ ରକ୍ଷଣଶୀଳତା ଏବଂ ନବ୍ୟ ଅଗ୍ରସରତା)ର ସୁନ୍ଦର ସାମଞ୍ଜସ୍ୟ ସମଗ୍ର ଭାରତବର୍ଷରେ ବିରଳ ବୋଲି ବୋଧ ହୁଏ ।"

"ବାସୁଦେବଙ୍କ ନ୍ୟାୟ ନିରାଡ଼ମ୍ବର, ନିରଭିମାନ, ନିରଳସ ଏବଂ କର୍ତ୍ତବ୍ୟନିଷ୍ଠ ରାଜା ଭାରତୀୟ ସଂସାରରେ ଅତି ଦୁର୍ଲ୍ଲଭ । ଇତିହାସ କହେ ଯେ, ବୀର ବିକ୍ରମାଦିତ୍ୟଙ୍କ ଗୃହସଜ୍ଜା କେବଳ ମାତ୍ର ଖଣ୍ଡିଏ ଶଯ୍ୟା ଏବଂ ଗୋଟିଏ ଜଳପୂର୍ଣ୍ଣ ପାତ୍ର (ମାଠିଆ) ଥିଲା । ରାଜା ବାସୁଦେବଙ୍କ ନିତ୍ୟ ବ୍ୟବହାର୍ଯ୍ୟ ଗୃହର ସାଜସଜ୍ଜା ଅବିକଳ ସେହିରୂପ ଥିଲା । ଗୃହର ସାଜସଜ୍ଜା ଯେରୂପ, ଶାରୀରିକ ବେଶଭୂଷା ମଧ୍ୟ ତଦନୁରୂପ । ଆଡ଼ମ୍ବର ତାହାଙ୍କୁ ସ୍ପର୍ଶ କରିନାହିଁ । ରାଜସୁଲଭ ଆଡ଼ମ୍ବର ତ ଦୂରର କଥା, ସାଧାରଣ ଲୋକଙ୍କ ମଧ୍ୟରେ ଯେରୂପ ଆଡ଼ମ୍ବର ମଧ୍ୟେ ମଧ୍ୟେ ଦେଖା ଯାଏ, ତାହା ସୁଦ୍ଧା ନ ଥିଲା । ଶିକ୍ଷା କରିବା ଓ ପରିଶ୍ରମ କରିବା ନିମନ୍ତେ ଜୀବନ ଅଭିପ୍ରେତ (intended) ଏହା ସେ କଦାଚ ବିସ୍ମୃତ ହୋଇ ନ ଥିଲେ ଏବଂ ଯେତେ ନିମ୍ନଶ୍ରେଣୀର ଲୋକ ହେଉ ନା କାହିଁକି, ତାଙ୍କଠାରେ କିଛି ଶିକ୍ଷଣୀୟ ବିଷୟ ଥିଲେ, ସେ ଆଗ୍ରହପୂର୍ବକ ତାହା ଶିକ୍ଷା କରୁଥିଲେ । ସଂସ୍କୃତ ଆଳଙ୍କାରିକଗଣ କହିଥାଆନ୍ତି ଯେ କବି ହେବାକୁ ହେଲେ 'ବ୍ୟୁତ୍ପତ୍ତ୍ୟୈ ସର୍ବ ଶିଷ୍ୟତା' ଅର୍ଥାତ୍ ଜ୍ଞାନ ଲାଭ ନିମନ୍ତେ ସକଳର ଶିଷ୍ୟତ୍ୱ ସ୍ୱୀକାର କରିବାକୁ ହେବ । ଜ୍ଞାନ ଲାଭ ନିମନ୍ତେ ସାର ବାସୁଦେବ ସେହି ପଥର ଅନୁସରଣ କରିଥିଲେ । କେବଳ ଯଦୃଚ୍ଛା ମିଳିତ ଲୋକର ନିକଟରେ ଜ୍ଞାନ ଲାଭ କରି ଯେ ସେ ତୃପ୍ତ ହେଉଥିଲେ ତାହା ନୁହେ; ସମୟ ସମୟରେ ଅନେକ ବ୍ୟୟ ସ୍ୱୀକାର କରି ବଙ୍ଗ, ଉତ୍କଳ, ବିହାର, ଉତ୍ତର-ପଶ୍ଚିମ ପ୍ରଦେଶ ଏବଂ ଦ୍ରାବିଡ଼ ପ୍ରଭୃତି ଅଞ୍ଚଳରୁ ଗୁଣୀ ଏବଂ ମନସ୍ୱୀ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ ଦ୍ୱାରା ନିଜର ରାଜଧାନୀକୁ ଅଣାଇ ସେମାନଙ୍କର ଉପଦେଶ ଗ୍ରହଣ କରୁଥିଲେ । ଓଡ଼ିଶାର କେତେଜଣ ରାଜା ଏରୂପ କରନ୍ତି ? ଅନ୍ତଃପୁରର ଛାଇ କଣାପାତରେ ଜର୍ଜରିତ ହୋଇ, ଆତ୍ମମର୍ଯ୍ୟାଦାକୁ ପୃଷ୍ଠବର୍ତ୍ତୀ କରି କ୍ୱଚିତ୍ କୌଣସି ପଣ୍ଡିତ ଦ୍ୱାରସ୍ଥ ହେଲେ, ଲୌକିକ ପ୍ରଥା କିମ୍ବା ଚକ୍ଷୁଲଜ୍ଜାର ଅନୁରୋଧରେ ସେମାନଙ୍କୁ ଯତ୍କିଞ୍ଚିତ ପ୍ରଦାନ କରିବାର ପ୍ରଥା ଅଧିକାଂଶ ଦେଶୀୟ ରାଜ୍ୟରେ ପ୍ରଚଳିତ ଥିଲା । ନବ୍ୟ ଶିକ୍ଷିତାଭିମାନୀମାନଙ୍କର ଅଭିଧାନରେ ଏରୂପ ଆଳସ୍ୟକୁ ପ୍ରଶ୍ରୟ ଦାନର ପ୍ରତିଶବ୍ଦ ରୂପେ ଗୃହୀତ ହୋଇ ଦୁଃସ୍ଥ ଗୁଣବାନର ସତ୍କାର କରିବାର ସେହି ଚିରନ୍ତନ ପ୍ରଥା ବର୍ତ୍ତମାନ କ୍ରମଶଃ ଲୋପୋନ୍ମୁଖ ହେଉଅଛି । ଏକମାତ୍ର ବାମଣ୍ଡାରେ ଏହାର ସତ୍ତା ଅକ୍ଷୁଣ୍ଣ ଅଛି ବୋଲି ଶୁଣାଯାଏ । ବାମଣ୍ଡା ରାଜକୀୟ ଓଡ଼ିଶାର ବହିର୍ଭୂତ

ର ଅପେକ୍ଷାକୃତ ଦୂରବର୍ତ୍ତୀ ହୋଇ ସୁଦ୍ଧା ଓଡ଼ିଶାର ପଣ୍ଡିତ ମଣ୍ଡଳୀଙ୍କ ସହିତ ଘନିଷ୍ଠତା ସୂତ୍ରରେ ଯେଉଁପରି ସମ୍ବନ୍ଧ ଥିଲା, ଖାସ ଓଡ଼ିଶାରେ ସେ ରୂପ ରାଜ୍ୟ ପ୍ରାୟ ନାହିଁ । ବାସୁଦେବଙ୍କ ସର୍ବତୋମୁଖୀ ଉତ୍କର୍ଷର ଏହାହିଁ ପ୍ରଧାନ କାରଣ । ଏକ ସଙ୍ଗରେ ଏତେ ଗୁଣର ସମାବେଶ କେବଳ ମାତ୍ର ତାହାଙ୍କ ଠାରେହିଁ ଦେଖା ଯାଉଥିଲା । ବାସୁଦେବ ବୈଷ୍ଣବିକର ସଙ୍ଗେ ବୈଷ୍ଣବିକ, ଭାବୁକର ସଙ୍ଗେ ଭାବୁକ, ପୌରାଣିକର ସହିତ ପୌରାଣିକ, କବିର ସହିତ କବି, ସମାଲୋଚକର ସହିତ ସମାଲୋଚକ, ଆଳଙ୍କାରିକର ସହିତ ଆଳଙ୍କାରିକ,ବୈୟାକରଣର ସହିତ ବୈୟାକରଣ, ନୈୟାୟିକର ସହିତ ନୈୟାୟିକ, ବୈଦାନ୍ତିକର ସହିତ ବୈଦାନ୍ତିକ, ସ୍ମାର୍ତ୍ତର ସହିତ ସ୍ମାର୍ତ୍ତ, ଶାସ୍ତ୍ରବିଦର ସହିତ ଶାସ୍ତ୍ରବିଦ୍, ଅଶ୍ୱାରୋହର ସହିତ ଅଶ୍ୱାରୋହ, ଶିକାରୀର ସହିତ ଶିକାରୀ, ବଣିକର ସହିତ ବଣିକ, ବନ୍ଧାଣିର ସହିତ ବନ୍ଧାଣି, ଚିତ୍ରକରର ସହିତ ଚିତ୍ରକର, କୃଷକର ସହିତ କୃଷକ ଭାବେ ମିଶି ପାରୁଥିଲେ । ରାଜ୍ୟର ପ୍ରତ୍ୟେକ ବିଭାଗରେ ସେ ନିଜେ ନିଜର ସଚିବ ଥିଲେ । ଅନୁଷ୍ଠାନର ଭାର ଅନ୍ୟର ହସ୍ତରେ ନ୍ୟସ୍ତକରି ଉଦ୍ଭାବନ ଓ ପରିଦର୍ଶନର ଭାର ନିଜ ହସ୍ତରେ ନ୍ୟସ୍ତ ରଖିଥିଲେ । ବିଶେଷତଃ —କୋଷେଣାତ୍ରୟସ୍ତ 'କୋଷେଣାତ୍ରୟସ୍ତ ମାସୃତ୍ତଂ' ଏହି ମହାବାକ୍ୟ ସ୍ମରଣ ରଖି ରାଜସ୍ୱ ଭାଗ ବ୍ୟକ୍ତିଭାବେ ପୁଙ୍ଖାନୁପୁଙ୍ଖ ରୂପେ ପର୍ଯ୍ୟାଲୋଚନା କରିଥିଲେ ।"

---

## କଟକ ରେଭେନ୍‌ସା କଲେଜର ବିଜ୍ଞାନାଚାର୍ଯ୍ୟ ରାୟସାହେବ ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ରାୟ ଏମ୍. ଏ., ବିଦ୍ୟାନିଧି ମହାଶୟଙ୍କ ଲିଖିତାଂଶ : –

"ଆମ୍ଭେମାନେ ରେଳରୁ ଅବତରଣ କରିବା ମାତ୍ର ମହାରାଜାଙ୍କର ଜଣେ କର୍ମଚାରୀ ତଥାସ୍ଥ କଚେରୀ ଗୃହକୁ ନେଇଗଲେ । ସେଠାରେ ମହାରାଜାଙ୍କର ପ୍ରକାଣ୍ଡ କାଠର ବ୍ୟବସାୟ ଅଛି ଏବଂ ତଦ୍‌ଉପଲକ୍ଷରେ ସେଠାରେ କେତେ ଜଣ କର୍ମଚାରୀ ଓ ପୁଲିଶ ଥାଆନ୍ତି । ଉପସ୍ଥିତ ହେବା ମାତ୍ରେ ଗୋଟିଏ ଅଶ୍ରୁତପୂର୍ବ ବ୍ୟାପାର ପ୍ରତ୍ୟକ୍ଷ କଲି । ସେଠାରୁ ଦେବଗଡ଼ ପ୍ରାୟ ୬୨ ମାଇଲ । ମହାରାଜ ଏହି ସମସ୍ତ ପଥରେ ଯେ ଟେଲିଫୋନ ବସାଇଅଛନ୍ତି, ତାହା ମୁଁ ଜାଣେ ନାହିଁ । ଯାହା ହେଉ, ସେମାନେ ୬୨ ମାଇଲ ଦୂରରୁ ଆମ୍ଭମାନଙ୍କର ସ୍ୱାଗତ କୁଶଳ ପ୍ରଶ୍ନ କଲେ ଏବଂ ସେଠାରୁ ଗଡ଼କୁ ଯିବାର ଯାନାଦି ଓ ପଥମଧ୍ୟରେ ଅବସ୍ଥିତିର ବିଷୟ ଜଣାଇଲେ । ଆମ୍ଭେମାନେ ମଧ୍ୟ ଅଭିବାଦନ କରି ସେମାନଙ୍କ କୁଶଳ ପଚାରିଲୁ । କୌଣସି ଦେଶୀୟ ରାଜ୍ୟରେ ଏରୂପ ଟେଲିଫୋନର ବ୍ୟବସ୍ଥା ଅଛି କି ? ଦେଶୀୟ ଲୋକେ ବଙ୍ଗଳା ଓ ଓଡ଼ିଆ ଭାଷାରେ ଟେଲିଫୋନରେ କଥାବାର୍ତ୍ତା କରୁଅଛନ୍ତି । ବିକଳ ହେଲେ, ଯନ୍ତ୍ରର ସଂସ୍କାର କରୁଅଛନ୍ତି । ଅଭିନବ ବ୍ୟାପାର ! ··· ··· ··· ଅନ୍ୟ ଦେଶୀୟ ରାଜ୍ୟରେ ଏହିରୂପ ସଭ୍ୟତା ବ୍ୟଞ୍ଜକ ବ୍ୟବସ୍ଥା ଅଛି କି ନାହିଁ ତାହା ଜାଣିବା ଦରକାର ।"

"ସେ ଦିନ ଆମ୍ଭେମାନେ ଅଭୀଷ୍ଟ ସ୍ଥାନକୁ ଯିବାର କଳ୍ପନା ତ୍ୟାଗ କଲୁଁ । ପ୍ରାୟ ଦଶ ମାଇଲ ଆସି ବେହେରା ପରିବର୍ତ୍ତନର ବ୍ୟବସ୍ଥା ଥିଲା । ସେଠାକୁ ଆସିବାକୁ ଅପରାହ୍ଣ ୪ ଟା ହେଲା । ଶରୀରର ବେଦନା, ବାହାରେ ବୃଷ୍ଟି, ପଥର କର୍ଦ୍ଦମ ଭାବି ଆମ୍ଭେମାନେ ସେହିଠାରେ କୌଣସି ରୂପେ ରାତି ଯାପନର ସଙ୍କଳ୍ପ କଲୁଁ । ସେଠାରେ ଗୋଟିଏ କ୍ଷୁଦ୍ର ଗ୍ରାମ ଥିଲା ଏବଂ ଦିବାଭାଗରେ ଆହାରାଦି କରିବା ନିମନ୍ତେ ମହାରାଜାଙ୍କର ଗୋଟିଏ କ୍ଷୁଦ୍ର କୁଟୀର ଥିଲା । ଆମ୍ଭେମାନେ ସେଠାରେ ସେ ରାତି ରହିବା ଶୁଣି ଗ୍ରାମର ପ୍ରଧାନ ରାଜଭଣ୍ଡାରରୁ ଭୋଜ୍ୟ ଆଣି ଉପସ୍ଥିତ କଲା । ପଥର ପ୍ରତ୍ୟେକ ସ୍ଥାନରେ ଏହିରୂପ ରାଜଭଣ୍ଡାର ଓ ଆଗନ୍ତୁକର ପରିଚର୍ଯ୍ୟାର ନିମନ୍ତେ ଭୃତ୍ୟ ନିଯୁକ୍ତ ଅଛନ୍ତି । ଗଡ଼ରେ ପହଞ୍ଚି ଆମ୍ଭଙ୍କୁ ପାଞ୍ଚ ଜାଗାରେ

ଆହାରାଦି କରିବାକୁ ହୋଇଛି । ସକଳ ଜାଗାରେ ରାଜଭଣ୍ଡାର ଅଛି । ବ୍ୟବସ୍ଥା ସମୀଚୀନ ନୁହେ କି ?"

"ପଥରେ ଯେଉଁଠାରେ ଆମ୍ଭେମାନେ ରାତ୍ରିଯାପନ କଲୁଁ, ସେଠାରେ ଅବସ୍ଥାନ ସମୟରେ ଏକ କୁଟୀର ଅଛି । ଗ୍ରାମର ପ୍ରଧାନଙ୍କ ଛଡ଼ା ମହାରାଜଙ୍କର ଅନ୍ୟ କର୍ମଚାରୀ କେହି ନ ଥାନ୍ତି । ସୁତରାଂ ଟେଲିଫୋନର ଯୋଗ ନାହିଁ । ମହାରାଜ ଆମ୍ଭର ଅବସ୍ଥିତିର କଥା ଜାଣି ପାରିଲେ ନାହିଁ । ପରଦିନ ୧୦ ମାଇଲ ଯାଇ ମହାରାଜଙ୍କର ଗୋଟିଏ ସବ୍‌ଡିଭିଜନ୍‌ରେ ଉପସ୍ଥିତ ହେବା ମାତ୍ରେ, ସେ ପଥରେ କଷ୍ଟର କଥା ଶୁଣି ଦୁଃଖ ପ୍ରକାଶ କଲେ ଏବଂ ଅନ୍ୟାନ୍ୟ ସ୍ଥାନମାନଙ୍କରେ କେତେ କେତେ ବେଳେ ଉପସ୍ଥିତ ହେବାକୁ ହେବ ଏବଂ କିରୂପ ବ୍ୟବସ୍ଥା କରାହୋଇଅଛି ସବୁ ଜଣାଇଲେ । ପ୍ରତ୍ୟେକ ଜାଗାର କର୍ମଚାରୀମାନଙ୍କୁ ମଧ୍ୟ ଏ ବାର୍ତ୍ତା ପ୍ରେରଣ କରିଥିଲେ ।"

* * * *

"ହଠାତ୍ ଦିନେ ଖବର ପାଇଲି ବାମଣ୍ଡାଧିପତି ସାର୍ ସୁଚଳଦେବ କେ. ସି. ଆଇ. ଇ. ସ୍ୱର୍ଗାରୋହଣ କରିଅଛନ୍ତି । ପ୍ରାୟ ଏବେ ମାସେ ପୂର୍ବେ ତାଙ୍କୁ ସୁସ୍ଥ ଓ ସବଳ ଦେଖି ଆସିଥିଲି । ତାଙ୍କ ବୟସ ମଧ୍ୟ ଅଧିକ ହୋଇ ନାହିଁ । ବୋଧକରେଁ ୫୦।୫୨ ବର୍ଷରୁ ଅଧିକ ନୁହେ । କିନ୍ତୁ କାଳର ନିୟମ ନାହିଁ । କ୍ଷଣବିଧ୍ୱଂସୀ ଶରୀରର ନିଶ୍ଚୟତା ନାହିଁ । ଓଡ଼ିଶାର ଅନେକ ରାଜା ଦେଖିଅଛି, କିନ୍ତୁ ଅତ୍ୟଳ୍ପହିଁ ମହାରାଜ ସୁଚଳଦେବଙ୍କ ତୁଲ୍ୟ ଧାର୍ମ୍ମିକ, ମତିମାନ୍, ବିଚକ୍ଷଣ ଓ କର୍ମ୍ମକୁଶଳ ଦେଖିଅଛି । ତାଙ୍କୁ ଦେଖି ରଘୁବଂଶ ମନେ ପଡ଼ିଲା:—

ଆକାରସଦୃଶ ପ୍ରାଜ୍ଞଃ ପ୍ରାଜ୍ଞୟା ସଦୃଶାଗମଃ ।
ଆଗମୈଃ ସଦୃଶାରମ୍ଭ ଆରମ୍ଭ ସଦୃଶୋଦୟଃ ॥

ତାଙ୍କର ଅକାଳ ମୃତ୍ୟୁରେ ବାମଣ୍ଡା ରାଜ୍ୟ ସହୃଦୟ ରାଜା, ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବିଶ୍ୱାସଭାଜନ ସାମନ୍ତ, ସଂସ୍କୃତ-ସାହିତ୍ୟ-ଅନୁରାଗୀ ଭକ୍ତ, ଜନସାଧାରଣ ବଦାନ୍ୟ ଓ ସୁଜନ ଦେଶହିତୈଷୀ, ଏବଂ ରାଜକୁମାରଗଣ ସ୍ନେହଶୀଳ ପିତା ହରାଇଅଛନ୍ତି । ସୁଖର ବିଷୟ, ସେ ଯୁବରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଓ ରାଜକାର୍ଯ୍ୟରେ ଅଭିଜ୍ଞ କରାଇ ରଖି ଯାଇଅଛନ୍ତି । ଆଶାକରୁଁ ନୂତନ ରାଜା ଗୁଣରେ ପିତାଙ୍କ ତୁଲ୍ୟ ହେବେ ।"

## ଉତ୍କଳ-ସାହିତ୍ୟ ସମ୍ପାଦକ
## ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ଲିଖିତାଂଶ:—

"ପ୍ରାତଃକାଳରେ ଆହୂତ ହୋଇ ଏକାକୀ ମହାରାଜଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଗଲି । କାର୍ଯ୍ୟ ସମ୍ପାଦନ କରିବା ବିଷୟରେ ସୁଢ଼ଳଦେବ ଅକ୍ଳାନ୍ତ । ସାଧାରଣ ଶ୍ରେଣୀର ଲୋକଙ୍କ ମଧ୍ୟରେ ସୁଦ୍ଧା ଏରୂପ ଧୈର୍ଯ୍ୟ ଓ ଶ୍ରମସ୍ୱୀକାର ବିରଳ । କଥାପ୍ରସଙ୍ଗରେ ଥରେ ଆମ୍ଭମାନଙ୍କ ନିକଟରେ ପ୍ରକାଶ କରିଥିଲେ, "ନିଜେ ଯଦି ସବୁ ବିଷୟ ନ ଦେଖେଁ, ତାହାହେଲେ ମହାରାଜ ହୋଇ ବସି ରହିବାକୁ ହେବ ।" ଦୁର୍ଭାଗ୍ୟର ବିଷୟ, ଦେଶୀୟ ରାଜନ୍ୟମଣ୍ଡଳୀଙ୍କ ମଧ୍ୟରେ ଅନେକେ ଏହି ମହାରାଜ ହୋଇ ନିଜର ଓ ପ୍ରଜାବର୍ଗଙ୍କର ଅଶେଷ ଦୁର୍ଗତି ଘଟାଇଅଛନ୍ତି । ମହାରାଜଙ୍କ ସଙ୍ଗେ ନାନା ବିଷୟରେ କଥୋପକଥନ ହେଲା । ସାହିତ୍ୟ ବିଷୟ ପ୍ରଧାନ । ନିଜର ସ୍ୱାଧୀନ ମତ ରକ୍ଷା କରିବା ନିମନ୍ତେ ତାଙ୍କର ଯେଉଁ ଆଗ୍ରହ, ଅନ୍ୟ ବ୍ୟକ୍ତିର ସ୍ୱାଧୀନ ମତ ଉପରେ ସେହିରୂପ ଆଦର । ବସାକୁ ଫେରିଆସିବା ବେଳେ ଯୁବରାଜଙ୍କ ସହିତ ସାକ୍ଷାତ୍ କଲି । ଯୁବରାଜ ପିତୃକୀର୍ତ୍ତି ରକ୍ଷା କରିବା ନିମନ୍ତେ ବିଶେଷ ଯତ୍ନବାନ୍ । ଉତ୍କଳ-ସାହିତ୍ୟ-ସଂସାରରେ ସେ ପରିଚିତ ହୋଇଅଛନ୍ତି ।"

"ମହାରାଜ ଓ ଯୁବରାଜଙ୍କ ସୌଜନ୍ୟପୂର୍ଣ୍ଣ ବ୍ୟବହାରରେ ମୁଗ୍ଧ ହୋଇଥିଲି । ଉତ୍କଳର ରାଜନ୍ୟବର୍ଗଙ୍କ ମଧ୍ୟରେ ସୁଢ଼ଳଦେବ ଆଦର୍ଶ-ପୁରୁଷ । ରାଜପଦୋଚିତ କର୍ତ୍ତବ୍ୟଗୁଡ଼ିକ ଦକ୍ଷତା ସହିତ ସମ୍ପନ୍ନ କରି ସେ ଯେରୂପ ଶାସ୍ତ୍ରାଲୋଚନା ଓ ସାହିତ୍ୟଚର୍ଚ୍ଚାରେ ଯତ୍ନବାନ୍ ସେରୂପ ଦୃଷ୍ଟାନ୍ତ ଏହି ହତଭାଗ୍ୟ ଦେଶରେ, ବିଶେଷତଃ ଆମର ରାଜକୁଳରେ ବିରଳ । ପଶ୍ଚାତ୍ୟଶିକ୍ଷାଲାଭ ନ କରି, ପାଶ୍ଚାତ୍ୟ ଗ୍ରହଣଯୋଗ୍ୟ ଭାବ ସକଳ ସେ ଯେରୂପ ଆତ୍ମସ୍ଥ କରି ପାରିଅଛନ୍ତି, ତହିଁରେ ତାଙ୍କର ସୁତୀକ୍ଷ୍ଣ ଦୃଷ୍ଟି ଓ ଅସାଧାରଣ ପ୍ରତିଭାର ସୁସ୍ପଷ୍ଟ ପରିଚୟ ମିଳେ ।"

"ସୁଢ଼ଳଦେବଙ୍କ ସକଳ କାର୍ଯ୍ୟରେ ଆଡ଼ମ୍ବରଶୂନ୍ୟତା ପ୍ରକାଶ ପାଏ । ରାଜବାଟୀ ଏବଂ ଗୃହସଜ୍ଜାଦି, ପଦ ଏବଂ ଅବସ୍ଥାର ଅନେକ ନିମ୍ନରେ । ଏହା ନିନ୍ଦାର କଥା ନୁହେ, ବରଂ ପ୍ରଶଂସାରହିଁ କଥା ।"

"ସଭାଭଙ୍ଗର ପରେ ଆମ୍ଭେମାନେ ରାଜବାଟୀକୁ ଆହାର କରିବାକୁ ଗଲୁଁ । ଆହାର ସମୟରେ ମହାରାଜଙ୍କର ଆଦର ଓ ଯତ୍ନ ଦେଖି ମୋହିତ ହୋଇଥିଲି । ବହୁ ପରିଚାରକ ଓ କର୍ମଚାରୀ ଥିବା ସତ୍ତ୍ୱେ ନିଜ ହସ୍ତରେ ପରିବେଷଣ କରି ଓ ନାନାପ୍ରକାର ମିଷ୍ଟବାକ୍ୟରେ ସମ୍ଭାଷଣ କରି ଆମ୍ଭମାନଙ୍କୁ ଆପ୍ୟାୟିତ କରିଥିଲେ । ଆଜି 'ରୁକ୍ମଣୀ ବିବାହ' ନାମରେ ଗୋଟିଏ ଉତ୍ସବ ଏହି ଅଞ୍ଚଳରେ ଅନୁଷ୍ଠିତ ହୁଏ । ଏହି ଉପଲକ୍ଷରେ ଦେବଗଡ଼ରେ ବହୁଲୋକର ସମାଗମ ହୋଇଥାଏ । ବର୍ତ୍ତମାନ ରାଜଧାନୀରୁ ପ୍ରାୟ ଏକ ମାଇଲ ଦୂରରେ ପୁରାତନ ରାଜଧାନୀର ଭଗ୍ନାବଶେଷ ରହିଅଛି । ଏହି ସ୍ଥାନରେ ଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠିତ । ସେଠାରୁ ଶୋଭାଯାତ୍ରା ନୂତନ ଗଡ଼କୁ ଆସେ ଏବଂ ସମସ୍ତ ରାତି ବାଣ ମରା ଯାଇଥାଏ ।"

"ଆମ୍ଭେମାନେ ମହାରାଜଙ୍କ ନିକଟକୁ ବିଦାୟ ଗ୍ରହଣ କରିବାକୁ ଗଲୁଁ । ପ୍ରାୟ ଦୁଇଘଣ୍ଟାକାଳ ସାହିତ୍ୟ ବିଷୟରେ କଥୋପକଥନ ହୋଇ-ଥିଲା । କି ସଂସ୍କୃତ ସାହିତ୍ୟ କି ପ୍ରାଚୀନ ଉତ୍କଳସାହିତ୍ୟ ଉଭୟ ମଧ୍ୟରେ ତାଙ୍କର ଗଭୀର ପାଣ୍ଡିତ୍ୟ । କାଳିଦାସଙ୍କ କବିତା ଉପରେ ମୁରାରିଙ୍କ ଶ୍ରେଷ୍ଠତା ପ୍ରକାଶ କରି ସେ ଯେଉଁରୂପ ମତ ବ୍ୟକ୍ତ କଲେ, ତାହା ଆମ୍ଭମାନଙ୍କ ନିକଟରେ ଅସଙ୍ଗତ ବୋଧ ହେଲା । ଅଳଙ୍କାର-ବିନ୍ୟାସ ଓ ରଚନା-ପାରିପାଟ୍ୟ ଉପରେ ଅଧିକ ଆସ୍ଥା ସ୍ଥାପନ କରିବା ବିଶୁଦ୍ଧ ପ୍ରାଚ୍ୟ ଓ ପ୍ରାଚୀନ ରୁଚିର ପରିଚାୟକ । ସେ ଯାହାହେଉ, ତାଙ୍କ ପରି ସ୍ୱାଧୀନ-ଚେତା, ଚିନ୍ତାଶୀଳ, ନିଷ୍ଠାବାନ୍ ଭାରତଭକ୍ତ ଉତ୍କଳ ଭୂମିରେ ଏକାନ୍ତ ବିରଳ । ମହାରାଜ ତାଙ୍କର ଅସମ୍ପୂର୍ଣ୍ଣ ଶାରଦୀୟା କାବ୍ୟକୁ ସମ୍ପୂର୍ଣ୍ଣକରିବା ଅଭିପ୍ରାୟରେ ମହାରାଷ୍ଟ୍ରୀୟ ଭାଷାରେ ଲିଖିତ ଖଣ୍ଡିଏ ନବପ୍ରକାଶିତ ଲକ୍ଷ୍ମୀ-ବାଈ ଚରିତ ଆଣାଇ ତାହା ଉତ୍କଳ ଭାଷାରେ ଅନୁବାଦ କରାଇବାର ଆୟୋଜନ କରାଇଅଛନ୍ତି । ପ୍ରାତଃକାଳରେ ଛଅଟା ସମୟରେ ବାମଣ୍ଡା ତ୍ୟାଗ କଲି । ବିଦେଶରୁ ଗୃହକୁ ଗଲି ସତ୍ୟ, ତଥାପି ହୃଦୟରେ ବିଷାଦ-ମୟ ଭାବ ଜାଗରିତ ହୋଇଥିଲା ।"

---

## ସାର୍ ବାସୁଦେବ ସୁଢଳଦେବଙ୍କ ମୃତ୍ୟୁ ଉପଲକ୍ଷେ
## ଉତ୍କଳ ମଧୁସୂଦନ ରାଓଙ୍କ ପ୍ରଣୀତ
## ସାର୍ ଉତ୍କଳବାସୀଙ୍କ ପ୍ରାଣୋତ୍ଥିତ
## 'ଶୋକ-ଲହରୀ'

— ୧ —

"କି ଘୋର ବାରତା ଆଜ    ଅଶନି ନିର୍ଘାତେ
ପଶିଲା ଏ ଉତ୍କଳ-ଭବନେ
ଝଡ଼ିଲାତ କି ଦାରୁଣ    ଶୋକ-ଝଞ୍ଜାଘାତେ
ଶତ ଆଶା-ଲତା ହୃଦ-ବନେ ।
ଉତ୍କଳ-ଗଗନ-ରବି    ଦେବ ଶ୍ରୀସୁଢଳ
ଅସ୍ତମିତ ହେବା ଦ୍ୱିପ୍ରହରେ
ଘୋର ଅନ୍ଧକାରେ ମଗ୍ନ    କାତର ଉତ୍କଳ
ସକଳେ କାନ୍ଦଇ ଆର୍ତ୍ତସ୍ୱରେ ।
ପୂର୍ବେ ପଶ୍ଚିମେ ଆଜ    ବିଳାପର ଧ୍ୱନି
କାନ୍ଦଇ ରେ ଉତ୍ତର ଦକ୍ଷିଣ
ଆକୁଳେ କାନ୍ଦଇ ସର୍ବ    ଉତ୍କଳ-ଅବନୀ
ଚତୁର୍ଦ୍ଦିଗ ଶୋକେ ହିମଲୀନ ।

— ୨ —

ସତେ କି ହେ ମହାରାଜ !    ଗଙ୍ଗବଂଶ-ରବି
କୋଟି-ନେତ୍ର-ନନ୍ଦନ-ପ୍ରତିମା
ବୁଧକୁଳ-ମାନସାସ୍ଥ    ମନୀଷୀ ସୁକବି
ସ୍ୱଦେଶର ଗୌରବ ଗରିମା ।
ସତେ କି ହେ ପୁଣ୍ୟଶ୍ଳୋକ    ପରଲୋକ ଦେଶେ
ମହାପ୍ରସ୍ଥାନର ମହାପଥେ
ଗଲ ଭୁଲି ଏ ସଂସାର    ତେଜିଣ ନିମିଷେ
ସୁକୃତ-ପୁଷ୍ପକ-ପୁଣ୍ୟରଥେ ।

— ୩ —

ତେଜ ଶ୍ରୀସଚ୍ଚିଦାନନ୍ଦ ହୃଦୟ-ନନ୍ଦନେ
ତେଜ ପ୍ରିୟ ସୁତ ସୁତା ଜାୟା
ତେଜ ରାଜ୍ୟ ରାଜଦଣ୍ଡ ରାଜ୍ୟ ସିଂହାସନେ
ତେଜ ସଂସାରର ସର୍ବ ମାୟା
ଏ ମର୍ତ୍ତ୍ୟଧାମର ସୀମା ଲଙ୍ଘିଣ କ୍ଷଣକେ
ଯାଇଅଛ ଚାଲି ମହାବାହୁ !
ସେ ଅଜ୍ଞାତ ଲୋକ ପର— ଲୋକେ କ ଛଟକେ
ଯହୁଁ କେହି ନ ବାହୁଡ଼େ ଆଉ ।
ଯାଇଅଛ ଚାଲି ଦେବ ! ଚିରକାଳ ପାଇଁ
ଦିବ୍ୟଧାମ ଅମର ନଗରେ
ଏ ମର୍ତ୍ତ୍ୟ-ନୟନ ଆଉ ବିଲୋକିବ ନାହିଁ
ବୀର୍ଯ୍ୟ-ଦୀପ୍ତ ତବ କଳେବରେ ?

— ୪ —

ଶାଳପ୍ରାଂଶୁ ସେ ମୂରତି ସେ ବକ୍ଷ ବିପୁଳ
ସେ ପ୍ରଶାନ୍ତ କରୁଣ ନୟନ
ସେ ଦିବ୍ୟ ଆକାର ଯହିଁ ଏକାଧାରେ ଠୂଳ
ଶ୍ରୀମ କାନ୍ତ ଗୁଣ ଅଗଣନ ।
ଆକାର ସଦୃଶ ପ୍ରାଜ୍ଞ ଥିଲ ନରମଣି !
ଶାସ୍ତ୍ରେ ଅକୁଣ୍ଠିତା ତବ ବୁଦ୍ଧି
ଅନୁସରି ଜ୍ଞାନଗର୍ଭ କର୍ମର ସରଣୀ
ବିଧିରେ ଲଭିଲ ମହାସିଦ୍ଧି ।
ଧନ୍ୟ ଧନ୍ୟ କ୍ଷଣଜନ୍ମା ! ଜନ୍ମି ରାଜବଂଶେ
କ୍ଷଣସ୍ଥାୟୀ ମାନବ ଜନମେ
ମଣ୍ଡିଅଛ ମର୍ଯ୍ୟାଦାର ଯେଉଁ ଅବତଂସେ
ଯେଉଁ ମହା ପ୍ରୟାସ ବିକ୍ରମେ,
ସେହି ମହାପ୍ରୟାସର ପବିତ୍ର ସଂଯମେ
ଥିଲ ତୁମ୍ଭେ ମହା କର୍ମବୀର
ଆଡ଼ମ୍ବରଶୂନ୍ୟ ରାଜ— ଋଷି ରାଜ୍ୟାଶ୍ରମେ
ଗୃହାଶ୍ରମେ ଆଦର୍ଶ ଗୃହୀର ।

—୫—

ରାଜକର୍ମ କୋଳାହଳ     ମଧ୍ୟେ ଥାଇ ସଦା
କେମନ୍ତେ ହେ କବି କର୍ମବୀର !
ଭେଟିଲ ସେବଲ ସେନ୍ତ     ଭାରତୀ ବରଦା
ସୌଭାଗ୍ୟ ଲଭିଲ ତାଙ୍କ ବର ?
ରୁଚିର ସ୍ୱଭାବ ରାଜ୍ୟ     ହେ ରସଜ୍ଞ କବି !
ନିସର୍ଗର ସୌନ୍ଦର୍ଯ୍ୟ ନିଳୟେ
ଆନନ୍ଦେ ବିହରି କେତେ     ସୁମନୋଜ୍ଞ ଛବି
ରଚିଲ ସେ କବିତା ନିଚୟେ ।
ଉତ୍କଳର ସୁରଧୂନୀ     ଉତ୍କଳ-ପାବନୀ
ମହାନଦୀ 'ଚିତ୍ରୋତ୍ପଳା' ତଟ
ଶ୍ରୀକରେ ରଚିଲ ଚିତ୍ର     ଦିବସ ରଜନୀ
ମହାନଦୀ ମହିମା ବିକଟ ।
ଝାନ୍ସି ରାଣୀ ଲକ୍ଷ୍ମୀବାଇ     ଶୌର୍ଯ୍ୟ ସୁଚରିତ
ଶୁଣି ତବ କ୍ଷତ୍ରିୟ ଶୋଣିତ
ସଘନେ ଉଠିଲା ନାଚି     ତବ ବୀର ଚିତ୍ତ
ଗାଇଲ ହେ 'ବୀରବାମା' ଗୀତ ।
ଉତ୍କଳ ସାହିତ୍ୟାକାଶେ     ଉଇଁ ଶୁଭକ୍ଷଣେ
ଭାଷା ଯୋଗେ ଭବିଷ୍ୟ ମିଳନେ
ସୂଚିଲ ହେ ଦୂରଦର୍ଶୀ !     ଅରୁଣ ଯେସନେ
ସୂଚେ ମାଧବନ ଆଗମନେ ।
ସୁଧୀ କବି ଜନେ ଆହା     କେତେ ସମାଦର
କରିଅଛ ହେ ଗୁଣଗ୍ରାହକ !
ଗୁଣି ଗୁଣି ଗୁଣ ତବ     କେତେ ଗୁଣୀଙ୍କର
ବୁହାଇ ହେ ନୟନୁଁ ଲୋତକ ।

—୬—

ବାମଣ୍ଡା-ଗୌରବ ଦେବ !     ବାମଣ୍ଡା ମହିମା
ରାଜଧାନୀ ଦେବଗଡ଼ ଟେକ
ଉତ୍କଳ ଗୀର୍ବାଣ ବିଦ୍ୟା     ଗୌରବ ଗରିମା
ବଢ଼ାଇଲ ତୁମ୍ଭର ବିବେକ ।

ପ୍ରତି ବିବସରେ ପ୍ରୀତି— ପୂର୍ଣ୍ଣ ପ୍ରୟାସରେ
ଯେ ରଜ୍ୟ ପାଳିଲ ସୁମଙ୍ଗଳେ
ତେଜ ତାଙ୍କୁ ଅନ୍ତର୍ହିତ ହେଲ କ୍ଷଣକରେ
ବିରାଜିଲ ଏବେ ଦେବଦଳେ ।
ଏବେ ତବ ଲୋକଦ୍ୱୟ— ସାଧନା ଶୃଙ୍ଖଳା
ଅଭିଅଛୁ ଅପୂର୍ବ ମହିମା
ଦେବପୂଣ ଯାଏ ତବ ଜୀବନ ମାଧୁରୀ
ପ୍ରସାରିତ ଲଭି ମର୍ତ୍ତ୍ୟ ସୀମା ।

—୭—

ବିରାଜ ବିରାଜ ଦେବ ! ଅମର ଭବନେ
ଶୁଭ୍ର ନବ ଦେବମୂର୍ତ୍ତି ଲଭି
ଉତ୍କଳର ଅଶ୍ରୁଧୌତ ହୃଦୟ ଗଗନେ
ପ୍ରତିଫଳୁ ତବ ଦେବଛବି ।
ମହାମହେଶଙ୍କ ପଦ୍ମ— ପାଦ ଗ୍ରୁମୁଖତଳେ
ଲଭି ଦିବ୍ୟ ତେଜଃପୁଞ୍ଜ କାନ୍ତି
ଉଭାହୋଇ ଜ୍ୟୋତିର୍ମୟ ଦେବତାଙ୍କ ଦଳେ
ଗାଅ ଦେବ ଓଁ ସ୍ୱସ୍ତି ଶାନ୍ତି ।
ସେହି ଶାନ୍ତି-ମହାମନ୍ତ୍ର ସେହି ସ୍ୱସ୍ତିଗାନ
ସନ୍ତପ୍ତ ଏ ସଂସାର-ଆଳୟେ
ସ୍ଫୁରୁ ନିତ୍ୟ ସ୍ଫୁରୁ ନିତ୍ୟ ଅଭୟ ପ୍ରଦାନ
ମନୁଷ୍ୟର ହତାଶ ହୃଦୟେ ।
ସେ ସଙ୍ଗୀତ-ମନ୍ଦାକିନୀ କରୁ ମଧୁମୟ
ଲକ୍ଷ ଲକ୍ଷ ନକ୍ଷତ୍ରମଣ୍ଡଳ
ସେ ପରମ ଘୋଷଣାର ଅମୃତ ଅଭୟ
ବ୍ୟାପୁ ବ୍ୟୋମ ବାୟୁ ଜଳ ସ୍ଥଳ ।”

---

## ବ୍ୟାସକବି ଫକିରମୋହନ ସେନାପତି ସାର୍ ବାସୁଦେବ ସୁବଳଦେବଙ୍କୁ ଲକ୍ଷ୍ୟକରି ତାଙ୍କ 'ଉତ୍କଳ ଭ୍ରମଣ' ପୁସ୍ତକରେ ଲେଖିଛନ୍ତି :--

ହେ ସୁବଳ ମହାରାଜ କରେଁ ନମସ୍କାର ।
'ହିତୈଷିଣୀ' ତୁମ୍ଭ ଯଶ କରୁଛି ପ୍ରଚାର ॥
ମୁଗଲବନ୍ଧ ଛତ୍ରଶଗଡ଼ ବହୁତ ଅନ୍ତର ।
ଦୁହିଙ୍କୁ ମିଳାଇ ଦେଇଅଛ ପରସ୍ପର ॥
ବାମଣ୍ଡା ରାଜ୍ୟରେ କରୁଅଛ ରାଜପଣ ।
ମାତ୍ର ଜ୍ଞାନରାଜ୍ୟେ ଅଟ ନୃପତି ଆପଣ ॥
ହେ ରାଜନ ମାତୃଭାଷା ଉନ୍ନତି କାରଣେ ।
ଉତ୍ସାହିତ କରୁଅଛ ଗ୍ରନ୍ଥକର୍ତ୍ତା ଗଣେ ॥
କେତେ ଥିଲେ କେତେ ଛନ୍ତି ଗଡ଼ଜାତେ ରାଜା ।
ଉଡ଼ାଉଛି କିଏ ତୁମ୍ଭ ପରି କୀର୍ତ୍ତି ଧ୍ୱଜା ॥
ବୁଲେ ସବୁଠାରେ ତୁମ୍ଭ ଗୁଣ ଗାଇ ଗାଇ ।
ମହାରାଜ ବାହାଦୁର K. C. I. E.
ଓଡ଼ିଶା ବଙ୍ଗମାହାତ୍ୟ ସ୍ୱବର୍ଣ୍ଣ ଅକ୍ଷରେ ।
ଇତିହାସେ ଲେଖା ରହିଥିବ ଜଗତରେ ॥
ସାମାନ୍ୟ ମନୁଷ୍ୟ ମୁହିଁ କି ଗୁଣ ଗାଇବି ।
ମହାରାଜ ବାହାଦୂର ହୁଅ ଚିରଜୀବୀ ॥



**ପାକ୍ଷିକ ପତ୍ରିକା 'ସତ୍ୟବାଦୀ' ୧ ମ ଭାଗ ୭ ମ ସଂଖ୍ୟାରେ ଦେଶ-ମିଶ୍ରଣ ସମ୍ବନ୍ଧୀୟ 'ସାହିତ୍ୟକ ବେଠିଆ' ପ୍ରବନ୍ଧରେ ବାମଣ୍ଡାର ସୁଲେଖକ ସାହିତ୍ୟସେବୀ ସ୍ୱର୍ଗୀୟ ବୃନ୍ଦାବନନାଥ ଶର୍ମା ସାର୍ ବାସୁଦେବ ସୁଢଳଦେବଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି :—**

ଓଡ଼ିଶା ସହିତ ଆଜ ଯେଉଁସବୁ ଗଡ଼ଜାତ ମିଶି ଯାଇଛି, ସେହି ଗଡ଼ଜାତ ମଧ୍ୟରୁ ବାମଣ୍ଡା, ବଣାଇଁ, ଗାଙ୍ଗପୁର, ସୋନପୁର, ରେଢ଼ାଖୋଲ, ପାଟନା, କଳାହାଣ୍ଡି ଓ ସମ୍ବଲପୁର ଜିଲ୍ଲା ଅନ୍ୟ ପ୍ରଦେଶ ସହ ଶାସିତ ହେଉଥିଲା । ଏହିସବୁ ସ୍ଥାନରେ ଓଡ଼ିଆ ଭାଷା ସ୍ଥଳେ ହିନ୍ଦିଭାଷା ଚଳୁଥିଲା । ହିନ୍ଦିଭାଷାର କବଳରୁ ଏହିଗୁଡ଼ିକୁ କିଏ ରକ୍ଷାକଲା ? ଏ ପ୍ରଶ୍ନର ସମୁଚିତ ଉତ୍ତର କିଏ ଦେବ ? ଏ କର୍ମର ପ୍ରଧାନ ଉଦ୍‌ଯୋଗୀ କିଏ ? କାହାର ସାହାଯ୍ୟ, ସହାନଭୂତି, ଚେଷ୍ଟାର ଯୋଗୁଁ ଏହି ରାଜ୍ୟ-ବାସୀବୃନ୍ଦ ମାତୃଭାଷା ଓଡ଼ିଆକୁ ଫେରି ପାଇଲେ ? ଏ ସମ୍ବନ୍ଧରେ ପ୍ରକୃତ ପ୍ରମାଣ ଉପସ୍ଥାପିତ କରି ସାଧାରଣଙ୍କୁ ସରଳ ଭାଷାରେ ବୁଝାଇ ଦେବାକୁ ଆମ ଦେଶର କୌଣସି ଐତିହାସିକ ସକ୍ଷମ ହୋଇ ଅଛନ୍ତି କି ? ଏହି ରାଜ୍ୟ ଗୁଡ଼ିକ ମିଶିବାରୁ ବର୍ତ୍ତମାନ ଓଡ଼ିଶା ପ୍ରଦେଶର ସୌଷ୍ଠବ ବୃଦ୍ଧି ହୋଇଛି । ଓଡ଼ିଶା ପ୍ରଦେଶକୁ ବୃହତ୍ତର କରିବାକୁ ଏହି ସ୍ଥାନ ଗୁଡ଼ିକର ଆବଶ୍ୟକତା କେତେ ତାହା କହିବାର ପ୍ରୟୋଜନ ନାହିଁ । ପ୍ରାୟ ୫୦ ବର୍ଷ ପୂର୍ବେ ଉତ୍କଳର ଜଣେ ପ୍ରଖ୍ୟାତନାମା ଲେଖକ ବାମଣ୍ଡାର ରାଜା ସାର୍ ସୁଢଳଦେବଙ୍କୁ ଲକ୍ଷ୍ୟକରି ଲେଖିଥିଲେ :—

ମୁଗଲବନ୍ଦୀ ଛତିଶଗଡ଼ ବହୁତ ଅନ୍ତର
ଦୁହିଁଙ୍କୁ ମିଳାଇ ଦେଇ ଅଛ ପରସ୍ପର ।

ତତ୍‌କାଳୀନ 'ହିତୈଷିଣୀ' ପତ୍ରିକାର ସମ୍ପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କର ନାମ ଅନେକେ ଜାଣନ୍ତି । ଏହି ବିଦ୍ୟାରତ୍ନ ମହାଶୟ ଦେଶର କି କାର୍ଯ୍ୟ କରି ଯାଇଛନ୍ତି, ତାହା ଦେଖିବାର ଅବକାଶ ଉତ୍କଳବାସୀ ପାଇନାହାନ୍ତି । ପଣ୍ଡିତ ନୀଳମଣି, ସାର ସୁଢଳଦେବଙ୍କର ଆଶ୍ରିତ ପୁଣି ତାଙ୍କ ହସ୍ତରେ ଗଢ଼ା । ସେହି ପଣ୍ଡିତ ନୀଳମଣିଙ୍କୁ ଲକ୍ଷ୍ୟ କରି ଉତ୍କଳର ଜଣେ ବିଖ୍ୟାତ ଲେଖକ ବହୁଦିନ ପୂର୍ବେ ଲେଖିଥିଲେ—

ଭାଷାଯୋଗେ ଛିନ୍ନଭିନ୍ନ ଥିଲା ଏ ଉତ୍କଳ
ବାନ୍ଧିଲ ଏକତା ସୂତ୍ରେ ତୁମେ ହିଁ କେବଳ ।

ମଧ୍ୟପ୍ରଦେଶ ଅଧୀନରେ ଶାସିତ ହେଉଥିବା ଦେଶୀୟ ରାଜ୍ୟ ଗୁଡ଼ିକୁ ଛତିଶଗଡ଼ ବୋଲାଯାଏ । ବାମଣ୍ଡା, ସୋନପୁର, ପାଟନା, କଳାହାଣ୍ଡି, ରେଢ଼ାଖୋଲ ରାଜ୍ୟଗୁଡ଼ିକ ଛତିଶ ଗଡ଼ର ଅନ୍ତର୍ଗତ ଥିଲା । ଏ ଗୁଡ଼ିକ ମଧ୍ୟପ୍ରଦେଶର ଚିଫ୍‌କମିଶନରଙ୍କ ଦ୍ୱାରା ଶାସିତ ହେଉଥିଲା । ମାତ୍ର ଆଜି ବୃହତ୍ତର ଓଡ଼ିଶାପ୍ରଦେଶ ସହ ମିଶି ଯାଇଅଛି । "ହିତୈଷିଣୀ" ପତ୍ରିକାର ପୃଷ୍ଠପୋଷକ ବାମଣ୍ଡା ରାଜବଂଶ ଓଡ଼ିଆଭାଷା ଓ ସାହିତ୍ୟ ତଥା ଓଡ଼ିଶା ଦେଶ ରକ୍ଷାର୍ଥେ ଯେଉଁସବୁ କର୍ମ କରି ଯାଇଅଛନ୍ତି, ତାହା ଉପଲବ୍ଧି କରିବାର ସମୟ ଆସି ନାହିଁ । ଯେତେବେଳେ ଓଡ଼ିଶାବାସୀ ପ୍ରକୃତ ଗୁଣର ପୂଜକ ହେବେ ସେତେବେଳେ ସେମାନଙ୍କୁ ସ୍ମରଣ କରିବେ ।

---

# ଭୂମିକା ।

ଭାରତ ରମଣୀମାନଙ୍କର ଦୁର୍ଲ୍ଲଭ ପୁରୁଷୋଚିତ ଗୌରବର ଅପମୃତ୍ୟୁହାରିଣୀ, ରଣଚାଣ୍ଡବମା ଲକ୍ଷ୍ମୀ ବାଈ ଯେତେବେଳେ ଭାରତୀୟ ଐତିହାସିକ ବାଗ୍-ବୈଭବର ଭୂସମ୍ପତ୍ତି ସ୍ୱରୂପା ହୋଇଅଛି, ତେତେବେଳେ ତହିଁରେ କବିମାନେ ଜନକାଙ୍କ୍ଷିତ ଭୂମି ପରି ଆପଣାର ସ୍ୱତ୍ତ୍ୱ ସ୍ଥାପନା କରିବାପାଇଁ ସ୍ୱକୀୟ ସରସ୍ୱତୀ ବୈଚିତ୍ର୍ୟର ଚରିତାର୍ଥତା ସମ୍ପାଦନ କରିବାକୁ କୁଣ୍ଠିତ ହେବେ କି ? ଏପରି ସ୍ଥଳେ ଆମ୍ଭର ଏତାଦୃଶୀ ସହୃଦୟାହ୍ଲାଦିନୀ ପ୍ରବୃତ୍ତି ଜନସମାଜରେ ବିଷୋଦ୍ଗାରିଣୀ ହେବନାହିଁ । ଆମ୍ଭର କୌଣସି ଉଦ୍ଦେଶ୍ୟ ନୁହେ, କେବଳ ଲକ୍ଷ୍ମୀ ବାଈ ଯାହା ହିନ୍ଦୁ କୁଳଲାବଣ୍ୟ ସହଃ ସରୋଜମାରେ କିପରି ସହିଷ୍ଣୁତାର ଅପୂର୍ବଚ୍ଛଟା ଦେଖାଇଅଛି ତାହାହିଁ ପାଠକମାନଙ୍କୁ ଜଣାଇବାର ବାସନା ମାତ୍ର । ଲକ୍ଷ୍ମୀ ବାଈର ଗୁଆଲିୟର ଅଧିକୃତ ଓ ସେଠା ଯୁଦ୍ଧ ଏବଂ ତହିଁରେ ଦେହତ୍ୟାଗାଦି ଆଉ ଗୋଟିଏ ସର୍ଗରେ ବର୍ଣ୍ଣିତ ହେବାକୁ ସମୟାପେକ୍ଷୀ ହୋଇଅଛି । ଇତି ।

ରଚକ

# ବୀର-ବାମା

## ପ୍ରଥମ ସର୍ଗ ।

ପ୍ରକୃତି ପୁରୁଷ ବ୍ରହ୍ମାଣ୍ଡର ବିକାଶକ,
ଉଭୟ ଧର୍ମ ଉଭୟେ ସଦା ନିୟାମକ । ୧ ।
ବୀରତା ପୁରୁଷେ ମୃଦୁଳତା ନାରୀଠାରେ,
ସ୍ୱତଃସିଦ୍ଧ ରଞ୍ଜକତା ଦିଶଇ ବାହାରେ । ୨ ।
ବୀରରସ ପୁରୁଷର ସର୍ବସ୍ୱ ବର୍ଣ୍ଣିତ,
ନାରୀଠାରେ ବୀରଧର୍ମ ବିରଳ କଥିତ । ୩ ।
ସ୍ୱଭାବ ରମଣୀୟତା ଯେତେ ମନ ହରେ,
ବିପରୀତ ହେଲେ ପ୍ରାୟ ତତୋଽଧିକ କରେ । ୪ ।
ଅବୀରେ ବୀରତା ଉକ୍ତି ହୁଏ ଚମତ୍କାର,
ତେଣୁ ଭାରତ ବଧୂର ବୀରତ୍ୱ ପ୍ରକାର । ୫ ।
କହିବାକୁ ସହୃଦୟେ ହୃଦୟ ସହିତ,
ଉତ୍ସାହିତ ହେଲା ବାରେ ଶୁଣ ଏ ଚରିତ । ୬ ।
ଭାରତ ଶିରର ଏକ ମନୋହର ସ୍ଥାନ,
ବୁନ୍ଦେଲଖଣ୍ଡ ମଧ୍ୟରେ ସେ ବିରାଜମାନ । ୭ ।
ଝାନ୍ସୀନାମେ ବସୁମତୀ ମହର୍ଦ୍ଧା ପାଳିତ,
ରାଓ ବଂଶୀୟ ଭୂପତି ଦୋର୍ଦ୍ଦଣ୍ଡ ଶାସିତ । ୮ ।
ପର୍ବତମାଳା ଯାହାର ପ୍ରାଚୀର ପ୍ରକାର,
ତରୁଶ୍ରେଣୀ ରୁଚିରତା ଉଦ୍ୟାନ ଆକାର । ୯ ।
ଦକ୍ଷିଣ ଉତ୍ତରେ ଯେଉଁ ମହା ଗିରିରାଜ,
ନିଜ ଦର୍ପ ଦେଖାଅନ୍ତି ଉତ୍ତମାଙ୍ଗ ସାଜି । ୧୦ ।
ଉନ୍ନତ ମଣିରେ ଯାହା ବିଶ୍ୱ ଆଦର୍ଶକ,
ଭୂପତି କୁଳର ଏକା ଗୌରବ ଦର୍ଶକ । ୧୧ ।
ଅରିଗର୍ବ ବିମର୍ଦ୍ଦନ କରି ଧରାଧର,
ଛାତି ଫୁଲଇ ଅଛୁ କି ବାନ୍ଧି ପରିକର ? । ୧୨ ।

ଶତ୍ରୁ ଶସ୍ତ୍ର ନାଶିବାକୁ ପାତିଛୁ କି ବକ୍ଷ ?
କାଠିନ୍ୟରେ ହୋଇଅଛୁ ବଜ୍ରଠାରୁ ଦକ୍ଷ । ୧୩ ।
ଶତଘ୍ନୀ ଶତ ଶତ ପଡ଼ି ଯା ହୃଦୟେ,
ଧୂଳି ହୋଇ ଯାଇ ତହିଁ ଅଣୁଭାବେ ରହେ । ୧୪ ।
ଗିରି-ଦୁର୍ଗ ଅଧିପତି ମହର୍ଠା ନୃପତି,
ଚକ୍ରବର୍ତ୍ତୀ ସଙ୍ଗେ ସଦା ସଖ୍ୟ ଆଚରନ୍ତି । ୧୫ ।
ଯେତେବେଳେ କମ୍ବର୍‌ମିୟର୍ ଭାରତ ଭୂଷଣ,
ଭରତ ପୁର ଦୁର୍ଗକୁ କଲେ ଆକ୍ରମଣ । ୧୬ ।
ଅଭେଦ୍ୟ ଅଜେୟ ଦୁର୍ଗ ଉନ୍ନତ ପ୍ରାଚୀର,
ଧନେ, ମାନେ, ବୀରପଣେ ଟେକିଛି କି ଶିର । ୧୭ ।
ବେଢ଼ିଲେ ଶ୍ୱେତାଙ୍ଗ ସେନା ଚତୁଃପୁର କରି,
ପିପୀଲିକା ଗତି ତହିଁ ନୋହିଲା ସଞ୍ଚାର । ୧୮ ।
ଅଶନିସମ ନିର୍ଘୋଷେ ଛୁଟିଲା କମାଣ,
ବିଘୂର୍ଣ୍ଣିତ ହେଲା ବାସୁକିର ଶିରମାନ । ୧୯ ।
ଗୋଲାଘାତରେ ପ୍ରାଚୀର ନୋହିଲା କମ୍ପିତ,
ତାହା ଦେଖି ସେନାପତି ହୋଇଲେ ଚକିତ । ୨୦ ।
ଏକାଳେ ନାନା ପଣ୍ଡିତ ବହୁସେନା ସାଜି,
ଧାଇଁଲା ଲର୍ଡ଼ ଉଦ୍ଦେଶ୍ୟେ ନିଜ ଶସ୍ତ୍ର ମାଜି । ୨୧ ।
କାଲ୍ପି ଦୁର୍ଗ ଚତୁଃସୀମା ବେଢ଼ିଲା ସତ୍ୱରେ,
ବ୍ରିଟିଶବାହିନୀ ପତି ଖେଦ ମନେ ଧରେ । ୨୨ ।
ଏହି ଅବସରେ ଝାନ୍‌ସୀ ନର-ଅଧିପତି,
ରାମଚନ୍ଦ୍ର ବୀରବର ମହା ଚମୂପତି । ୨୩ ।
ଉଦ୍ଭଟ ଦୁର୍ଦ୍ଧର୍ଷ ମହା ରଣଧୁରନ୍ଧର,
ପଦାତି ସାଜି ହୋଇଲେ ଦୃଢ଼ପରିକର । ୨୪ ।
ବଲ୍‌ଗିତ ଦୁର୍ମ୍ମଦ ଅଶ୍ୱ ସେନାହିଁ ତହିଁରେ,
ନିଯୋଜିତ କଲେ ଅତିପ୍ରଚଣ୍ଡ ଗତିରେ । ୨୫ ।
ଶ୍ୱେତ ସେନାପତିଙ୍କର ହେଲେ ପୃଷ୍ଠଚର,
କାଲ୍ପି ଦୁର୍ଗୁଁ ନାନାଜୀଙ୍କୁ ତଡ଼ିଲେ ସତ୍ୱର । ୨୬ ।
ସେହିଦିନୁ ବ୍ରିଟିଶ-କେଶରୀ ପ୍ରିୟପାତ୍ର,
ହୋଇ ନିଜ ଭୂମଣ୍ଡଳେ ଅକମ୍ପିତ ଗାତ୍ର । ୨୭ ।

ଚକ୍ରବର୍ତ୍ତୀ ସମ୍ମାନିତ ରାଜ ବିଭୂଷାରେ,
ବିମଣ୍ଡିତ ହୋଇ ବିରାଜିଲେ ସୁଧୀରେ । ୨୮ ।
କିଛିଦିନ ଅନ୍ତେ ରାମଚନ୍ଦ୍ର ମହୀପତି,
ଧରାଧାମ ତେଜି ଗଲେ ଛାଡ଼ି ସ୍ୱସମ୍ପତ୍ତି । ୨୯ ।
ଭ୍ରାତୃଷ୍ପୁତ୍ର ରଘୁନାଥ ରାଓ ବୀରବର,
ପିତୃବ୍ୟ ସିଂହାସନରେ ବସିଲେ ସତ୍ୱର । ୩୦ ।
କେତେଦିନ ପରେ ସେହୁ ଧରାକୁ ତେଜିଲେ,
ଗଙ୍ଗାଧର ରାଓ ସିଂହାସନେ ବିରାଜିଲେ । ୩୧ ।
ଝାନ୍‌ସୀରାଜଲକ୍ଷ୍ମୀ ଆଲିଙ୍ଗନେ ବିଭୂଷିତ ,
ହୋଇ ମହା ମର୍ଯ୍ୟାଦାରେ ସ୍ୱଜନତୋଷିତ । ୩୨ ।
ଜରାବ୍ୟାଧି ସଞ୍ଚରିଲା ସ୍ୱାମୀଙ୍କ ଶରୀରେ,
କରାଳ କାଳ ଆକ୍ରାନ୍ତ କଲା ଧୀରେ ଧୀରେ । ୩୩ ।
ପୁତ୍ରହୀନ ନୃପତିଙ୍କ ମୁମୂର୍ଷୁ କାଳରେ,
ଦତ୍ତକ ଗ୍ରହଣ ଇଚ୍ଛା ହୋଇଲା ମନରେ । ୩୪ ।
ଡେଲହୌସୀ ନିକଟରେ କଲେ ନିବେଦନ,
ଦତ୍ତକ ଦେବାକୁ ସେହୁ ନୋହିଲେ ପ୍ରସନ୍ନ । ୩୫ ।
ହତାଶ ହୋଇ ଭୂପତି ଭଜିଲେ ସ୍ତମ୍ଭନ,
ଅପୁତ୍ରିକ ଭାବେ ସେହୁ ଛାଡ଼ିଲେ ଜୀବନ । ୩୬ ।
ନିଜ· ପତ୍ନୀ ଲକ୍ଷ୍ମୀ ବାଈ ଦୁର୍ଭଗା ମାତର ,
ଝାନ୍ସୀ ମହାସମୃଦ୍ଧିର ହୋଇଲେ ପାତର । ୩୭ ।
ସପତ୍ନୀ ଗଙ୍ଗା ବାଈଙ୍କୁ ଭଗିନୀ ଭାବରେ,
ସଙ୍ଗେ କରି ଦିନ ନେଲେ ବିଦୀର୍ଣ୍ଣ ହୃଦରେ । ୩୮ ।
ଏଣେ ଭାରତ ଶାସକ ଶୁଣି ଏ ଚରିତ,
ଝାନ୍‌ସୀ ଧରଣୀ ଗ୍ରହଣେ ହୋଇ ଲାଳାୟିତ । ୩୯ ।
ପେଷିଲେ ଶ୍ୱେତାଙ୍ଗ ଦୂତ ଝାନ୍ସୀ ଅଭିମୁଖେ,
ନିର୍ଭୟେ ସେ ସେହିରାଜ୍ୟେ ବିହରିଲେ ସୁଖେ ।୪୦।
ରାଜସ୍ତ୍ରୀ ହସ୍ତୁଙ୍କ ଗାତ୍ରାଭରଣ ସହିତ,
ସମଗ୍ର ସମ୍ପତ୍ତି କରି ସ୍ୱକର କଳିତ । ୪୧ ।
ଚଳିତ ବ୍ରିଟିଶ ମହାଧ୍ୱଜା ଧୀରେ ଧୀରେ,
ଉଡ଼ାଇ ଶାସନା କଲେ ଅତ୍ୟୁଗ୍ର ବିଧିରେ । ୪୨ ।

ଦେଖି ଏ ଗର୍ହିତ ବିଧି ଲକ୍ଷ୍ମୀ ବାଯ୍ଯୀ ରାଣୀ,
ଜଳିଲେ କ୍ରୋଧରେ ଦାବାନଳ ପରମାଣି । ୪୩ ।
ପୁରୁଷୋଚିତ କାର୍ଯ୍ୟକୁ ଅକ୍ଷମ ପ୍ରକୃତ,
ତୁଷାଗ୍ନି ପରେ ରହିଲ ନୋହି ଆବର୍ତ୍ତିତ । ୪୪ ।
ପତିନାଶ ରାଜ୍ୟଭ୍ରଂଶ ସମ୍ପତ୍ତି ଲୁଣ୍ଠନ,
ଏଥିଁ ବଳି ମହୀତଳେ ଅଛି କି କଷଣ ? । ୪୫ ।
ନିଜ କୁଳ ଗୌରବରେ ଆଶ୍ୱାସି ହୃଦୟ,
ସୁଖେଦୁଃଖେ ଦିନ ନେଲେ ସେ ରମଣୀଦ୍ୱୟ । ୪୬ ।
ଦିନୁଦିନୁ ବହ୍ନି ପୁଞ୍ଜ ଲଭନ୍ତେ ପ୍ରସୃଷ୍ଟି,
ଦଗ୍ଧ ହେଲା ରମଣୀ ସୁଲଭ ମୃଦୁ ସୃଷ୍ଟି । ୪୭ ।
ବୀର ରସ ଆଲମ୍ବନ କ୍ରୋଧ ଯେଣୁ ଅଛି,
ସେହି କ୍ରୋଧ ଅନଳ ଭାରତକୁ ବହିଅଛି । ୪୮ ।
ତେଣୁ ବୈର ଧୀରେ ଧୀରେ ହୃଦେ ସଞ୍ଚରିଲା,
ସକଳ ପ୍ରକୃତି ବୀର ଗର୍ବରେ ନାଚିଲା । ୪୯ ।
ଭାରତ କମ୍ପିଲା ଯହୁଁ ସମର ତରଙ୍ଗେ,
ବୀରବାଜା ନାନାସ୍ଥାନେ ବାଜେ ନାନା ରଙ୍ଗେ ।୫୦।
ସବୁକାଳେ ଭୂମାତାର ଧର୍ମ୍ମ ଏକା ସାକ୍ଷୀ,
ଅଧର୍ମ ହୋଇଲେ ଉଠେ ସେ ରୁଧିର ମାଗି । ୫୧ ।
ଧର୍ମହାନିରେ ଉତ୍ତପ୍ତ ହୁଅଇ ରୁଧିର,
ଛାତି ଫୁଲାଇ ଉଠନ୍ତି ଭାରତ ପ୍ରବୀର । ୫୨ ।
ବ୍ରିଟିଶ କେଶରୀ ବିପକ୍ଷରେ ଶସ୍ତ୍ର ଧରି,
ବାହାରିଲେ ନହିଲେ ପଡନ୍ତେ କୃତାନ୍ତରେ ବରି ।୫୩।
ଭୂତଳ କ୍ଷତଜଧାରେ ହୋଇଲା ପିଚ୍ଛିଳ,
ବସା, ମସ୍ତିଷ୍କମେଦରେ ଅତ୍ୟନ୍ତ ପଙ୍କିଳ । ୫୪ ।
ଦେଖୁଁ ଦେଖୁଁ ଧର୍ମମଦେ ମାତିଲା ଭାରତ,
କ୍ରୋଧାନ୍ଧ ହୋଇ ସକଳେ ହେଲେ ଯୁଦ୍ଧେ ରତ ।୫୫।
ରଣରେଣୁ ଧୂସରିତ ରାଜନ୍ୟ ସବନ,
ସାହସ କେଳି ତଳପେ ଶୋଇଲେ ବଦନ । ୫୬ ।
ଶ୍ମଶ୍ରୁ ଫୁଲାଇ ଉଠିଲେ ଖଡ୍ଗ ଧରି କରେ,
ଚକ୍ଷୁ ବୁଜି ରଣାଗ୍ନିରେ ପଶିଲେ ସତ୍ୱରେ । ୫୭ ।

ଘରେ ଘରେ ଗ୍ରାମେ ଗ୍ରାମେ ସମର ଚହଳ,
ଯେଣେ ଅନାଇଁଲେ ଦିଶେ ଯୋଦ୍ଧା ଦଳ ଦଳ ।୫୮।
ଲର୍ଡ଼ କମ୍ବର୍ ମିସ୍ତ୍ରର୍ ଗଜପ୍ରଭଞ୍ଜନଧି,
ମହାକ୍ଷୋଧ-ତରଙ୍ଗରେ ହେଲେ ଜଳନିଧି । ୫୯ ।
ଅହିବତ ଉଠାଇଲେ ନିଜ ବାହୁଫଣା,
ଚତୁର୍ଦ୍ଦିଗେ ଘୂଣିଦେଲେ ଶୌର୍ଯ୍ୟବିଷକଣା । ୬୦ ।
ସାଜିଲେ ସୈନ୍ୟ ନିକର ଶ୍ୱେତାଙ୍ଗ ପଦାତି,
ନିଜ ନିଜ ଗର୍ବ ମଦେ ଉଠିଛନ୍ତି ମାତି । ୬୧ ।
ଟଂକ୍ରମ ନାରଙ୍ଗ ସମ ଦିଶେ ମୁଖ ରାଜି,
ସମସ୍କନ୍ଧେ ରହିଛନ୍ତି ହେଲାପରି ସାଜି । ୬୨ ।
ପୃତନା ସୁନୀଳ ବସ୍ତ୍ରେ ହୋଇ ବିଭୂଷିତା,
ଚଳନ୍ତେ ନୀଳତରଙ୍ଗ ପରାଏ କମ୍ପିତା । ୬୩ ।
ଭାରତ ବକ୍ଷ ସାଗର ପରାଏ କମ୍ପିଲା,
ସୈନ୍ୟସଜା ଆନ୍ଦୋଳନ ବେଗରେ ଭ୍ରମିଲା । ୬୪ ।
ଶୋଭଇ ବନ୍ଧୁକୋପରି ସୁତୀକ୍ଷ୍ଣ ସଙ୍ଗିନ,
କରିବ ଏ କି ଶତ୍ରୁଙ୍କ ଭେଦ ସର୍ବାଙ୍ଗୀନ ? । ୬୫ ।
ଅରି ମର୍ଦ୍ଦନ କମାଣ ଭୈରବ ନାଦରେ,
ନଗ, ନଗର, ଧରଣୀ କମ୍ପିଗଲେ ଡରେ । ୬୬ ।
ଅସ୍ତ ହେଲା ଭାରତର ଶୌର୍ଯ୍ୟ-ଦିନକର,
ଫୁଟିଲା ସୌଭାଗ୍ୟ-କୁମୁଦିନୀ ଲର୍ଡ଼ଙ୍କର । ୬୭ ।
ଶ୍ରବଣ-ଭୀଷଣ ଜୟ ଡିଣ୍ଡିମ ବଜାଇ,
ବିଜୟ ଘୋଷଣା ଦେଲେ ପ୍ରତିଦିଗେ ଯାଇ । ୬୮ ।
ଜୟଲକ୍ଷ୍ମୀ ଆଲିଙ୍ଗିତା ଭିକ୍ଟୋରିୟା ରାଣୀ,
ସର୍ବତ୍ର ପ୍ରଚାର କଲେ ଧର୍ମ ସୁଧା ବାଣୀ । ୬୯ ।
"ବିଦ୍ରୋହୀ ମାନଙ୍କ ଦୋଷ ଧର୍ତ୍ତବ୍ୟ ନ ହେବ,
ଧର୍ମ୍ମ ପ୍ରତି ହସ୍ତକ୍ଷେପ କଦାଚ ନୋହିବ" । ୭୦ ।
ଶୁଣି ସ୍ୱର୍ଗୀୟ ରସନା-ନର୍ତ୍ତକୀ ସୁବାଣୀ,
କର୍ଣ୍ଣ ମୁଖେ ପିଇଲେ ପୀୟୂଷ ଝର ଜାଣି । ୭୧ ।
ଭାରତ ପ୍ରଜାରେ ନିଜ ମୁକୁଟ ରତ୍ନରେ,
ନିଯୋଜନା କଲେ ମହାରାଣୀଙ୍କୁ ଯତ୍ନରେ । ୭୨ ।

ଅବନତ ଶିରେ ସେବାଞ୍ଜଳି ଦେଇ ଖରେ,
ସୁମାନ୍ତ-ଭାଗ୍ୟପର୍ଯ୍ୟଙ୍କେ ବସିଲେ ସତ୍ୱରେ । ୭୩ ।
ଏହି ଅବସରେ ଝାନ୍ସୀ ସିପାହି ନକର,
କାଲେଖାଁର ଉତ୍ତେଜନେ ହେଲେ ଅସ୍ଥିର । ୭୪ ।
ଝାନ୍ସୀଭୂମି ସ୍ୱାଧୀନରେ ରଖିବାକୁ ସର୍ବେ,
ମାତି ଉଠିଲେ ସଶସ୍ତ୍ରେ ନିଜ ନିଜ ଗର୍ବେ । ୭୫ ।
ହେନେ ଦୁର୍ଗମଣ୍ଡପରେ ଫିରଙ୍ଗି ସକଳ,
ଆମୋଦେ ବସି ଅଛନ୍ତି ହୋଇ ଦଳଦଳ । ୭୬ ।
ଦେଖୁଛନ୍ତି ପ୍ରଭାତର ଅପୂର୍ବ ସୁଷମା,
ବାଳ ଅରୁଣ କରଣେ ମନୋହରତମା । ୭୭ ।
ଶ୍ୱେତାଙ୍ଗ ରମଣୀ ଶୁଭ୍ର ତନୁ ଗୃରୁ ଚନ୍ଦ,
ପ୍ରଭାତ ମାଧୁର୍ଯ୍ୟ ଲକ୍ଷ୍ମୀ ତରଙ୍ଗେ ଚଞ୍ଚଳ । ୭୮ ।
ପ୍ରେମାଞ୍ଜନ ଶଳାକାର ସଦୃଶ ତରୁଣୀ,
ନୟନ ପୁଞ୍ଜ ତଳିରେ ହୋଇଛନ୍ତି ଋଣୀ । ୭୯ ।
ଚୋଷ୍ୟ ଚର୍ବ୍ୟ ଲେହ୍ୟ ପେୟ ଭୋଜନ ସମ୍ଭାର,
ଠାବେ ଠାବେ ରହିଅଛି ହେବାକୁ ଆହାର । ୮୦ ।
ପ୍ରେୟସୀ କରରେ ନିଜ କରକୁ ସମର୍ପି,
ଭ୍ରମନ୍ତି ଆନନ୍ଦଭରେ ହୋଇ ମହାଦର୍ପୀ । ୮୧ ।
ଚନ୍ଦ୍ରାନ୍ତକାଶ୍ମ ଦଳରୁ ହୃଦୟ ମର୍ଦ୍ଦିନୀ,
ଶୁଭିଲା ଏକାଳେ ହଠାତ୍ ଦୁଡୁମ୍ ଦୁଡୁମ୍ ଧ୍ୱନି ।
ଉତ୍କର୍ଣ୍ଣ ହୋଇ ସକଳେ ସତର୍କ ମନେ,
ଜାଣିଲେ ଉଠିଲା ଦେଶ ସିପାହି ସଦନେ । ୮୩ ।
ଦେଖୁଁ ଦେଖୁଁ ହତ୍ୟାକାଣ୍ଡ ଆରମ୍ଭିଲା ଆସି,
ଅସ୍ତ୍ର ଧରି ସଜ ହେଲେ ଶ୍ୱେତଦ୍ୱୀପବାସୀ । ୮୪ ।
ଅଟଳ ନିଷ୍କମ୍ପ ସେନା ବ୍ରିଟିଶସିଂହର,
ଶୃଗାଳ ମୁଖରବରେ ହେବ କି କାତର ? । ୮୫ ।
କଞ୍ଚା ମୃତପାଣେ ରହି ଗୋଳା ବରଷିଲେ,
ଛାଡ଼ି ଦୂଲଇ ଶତ୍ରୁଙ୍କ ସହିତେ ଯୁଝିଲେ । ୮୬ ।
ଦୁର୍ମଦ ଝାନ୍ସୀସିପାହି ମାତି ଅକାତରେ,
ଶୁଭ୍ର କଲେ ରଣକ୍ଷେତ୍ର ଶ୍ୱେତାଙ୍ଗ ଶବରେ । ୮୭ ।

ନିଜ ସେନା ଅଲ୍ପୀୟସୀ ଦେଖି କମିଶ୍ନର,
କଲ୍ପା ଭିତରୁ ଯିବାକୁ ହେଲେ ତରତର । ୮୮ ।
କଲ୍ପାରୁ ବାହାର ହୋଏ ଶ୍ୱେତାଙ୍ଗ ସକଳେ,
ବାଳକ ମହିଳା ସଙ୍ଗେ ଚଳଲେ ଚପଳେ । ୮୯ ।
ଚଳନ୍ତେ ମାର୍ଗରେ ସବୁ ବିଦ୍ରୋହୀ ନୃଶଂସ,
ସଭିରେ ମାଇଲେ ଘେରି ହୋଇ କ୍ରୋଧବଶ । ୯୦ ।
ଦୁଗ୍ଧକଣ୍ଠ ଶିଶୁ , ନାରୀ କିଛି ନ ରଖିଲେ,
ହୃଦୟ ବିଦାରଣ ହତ୍ୟା କାଣ୍ଡ ବିରଚିଲେ । ୯୧ ।
"ଜୟ ମା ଜୟ ମା ଲକ୍ଷ୍ମୀ ବାୟୀ ଜୟ ଜୟ"
ବୋଲି ବୋଲି ରାଣୀଠାକୁ ଗଲେ ସୈନ୍ୟଚୟ ।୯୨।
ଏ କାଣ୍ଡ କିଛି ମାତର ନ ଜାଣନ୍ତି ରାଣୀ,
ତତ୍କାଳେ ଶୁଣିଲେ ନିଜ ଜୟ ଜୟ ବାଣୀ । ୯୩ ।
ସାହେବ ମାନଙ୍କ ମହା ହତ୍ୟାକ୍ଷି ଶୁଣିଲେ,
ମନେ ମନେ ଧରାଧାମୁଁ ସ୍ୱଆଶା ତେଜିଲେ । ୯୪ ।
ସିପାହି ସର୍ଦ୍ଦାର ସର୍ବେ ରାଣୀକୁ ରାଜ୍ୟରେ,
ବସାଇ ଝାନ୍‌ସୀ ରାଜ୍ୟକୁ କଲେ ସ୍ୱାଧୀନରେ । ୯୫ ।
ଶୁଣିଲେ ଭାରତ ଚକ୍ରବର୍ତ୍ତୀ ଏ ଚହଳ,
ଫିରିଙ୍ଗି ଶୂନ୍ୟ ହୋଇଲା ଝାନ୍‌ସୀ ଭୂମଣ୍ଡଳ । ୯୬ ।
ନେତ୍ର କୋଣରୁ କ୍ରୋଧାଗ୍ନି ସ୍ଫୁଲିଙ୍ଗ ସ୍ଫୁରିଲା,
ଜବାକୁସୁମ ଛଟାରେ ଶରୀର କମ୍ପିଲା । ୯୭ ।
ମନେକଲେ ରକ୍ତମୟୀ ହେବ ଝାନ୍‌ସୀ ଉର୍ବୀ,
ଲକ୍ଷ୍ମୀ ବାୟୀ ହେତୁ ହତ୍ୟା ହୋଇଅଛି ଗୁର୍ବୀ ।୯୮।
ଏକାଳେ କାନପୁରରେ ବିଦ୍ରୋହ ଉଠିଲା,
ପୁଣି ଆର୍ଯ୍ୟାବର୍ତ୍ତ ଯୁଦ୍ଧ-ତରଙ୍ଗେ ଭାସିଲା । ୯୯ ।
ଝାନ୍‌ସୀ ଉଦ୍ଧାରେ ଲର୍ଡ଼ଙ୍କ ହେଲା ଗତିରୋଧ,
ତୁଷାନଳ ସମ ଭାବେ ବଢ଼ିଲା କ୍ରୋଧ । ୧୦୦ ।
କାନପୁର ବିଦ୍ରୋହରେ ବ୍ୟୂହ ବିରଚିଲେ,
ନାନା ସ୍ଥାନେ ସୈନ୍ୟମାନେ ସଦର୍ପେ ସାଜିଲେ ।୧୦୧।
ଏଣୁ ଅବସରେ ଲକ୍ଷ୍ମୀ ବାୟୀ ନିରାପଦେ,
ଦଶ ମାସ ବିହରିଲେ ନିଜ ଜନପଦେ ।୧୦୨।

—*—

## ଦ୍ୱିତୀୟ ସର୍ଗ

ପ୍ରବଳ-ପ୍ରତାପ ଲର୍ଡ୍ ଭାରତ ମିହିର,
ଅକମ୍ପ ହୃଦୟେ କଟାଇଲେ ଶତ୍ରୁ ଶିର । ୧ ।
ଅଭୟ, ବିଦ୍ରୋହହୀନ ହେଲା ଆର୍ଯ୍ୟାବର୍ତ୍ତ,
ଝାନ୍‌ସୀ ବିଦ୍ରୋହାଗ୍ନି ପୁଣି ହେଲା ପରିବର୍ତ୍ତ ।୨।
ଦୁର୍ଦ୍ଧର୍ଷ ଶ୍ୱେତାଙ୍ଗ ଚମୂ ତହିଁ ନିଯୋଜିଲେ,
ସୈନ୍ୟାଧ୍ୟକ୍ଷ "ହିଉରୋଜ" ସସୈନ୍ୟେ ଚଳିଲେ ।୩।
ଚୈତ୍ର ମାସ ତପ୍ତ ଧାର ତିଗ୍ମାଂଶୁ ସଙ୍ଗିମା,
ସତେଜେ ଚଳଇ ତହିଁ ଇଂରାଜ ବାହିନୀ । ୪ ।
ଝାନ୍‌ସୀ ରାଜ୍ୟ ସୈନ୍ୟରାଶି ତରଙ୍ଗ ବେଗରେ,
ବିଦଳିତ ହୋଇଗଲା ଅତ୍ୟନ୍ତ କ୍ଷୋଭରେ । ୫ ।
ଝାନ୍‌ସୀ ଦୁର୍ଗ ଚତୁଃସୀମା ବେଢ଼ିଲେ ଚଞ୍ଚଳେ,
ସ୍କନ୍ଧାବାର ଆଡ଼ମ୍ବରେ ଉଦ୍‌ବିଗ୍ନ ସକଳେ । ୬ ।
ଶତସିଂହ ମଧ୍ୟଗତ କୁରଙ୍ଗୀ ସଦୃଶା,
ଲକ୍ଷ୍ମୀ ବାୟୀ ରହିଅଛୁ ବଳେ ନୋହି କୃଶା । ୭ ।
ଧନ୍ୟ ସେ ରମଣୀ ! ଧନ୍ୟ ମୃଦୁଳ ପ୍ରକୃତି ! ,
ଦେଖୁଁ ଦେଖୁଁ ବୀରରସେ ଭଜିଲା ସଂସ୍କୃତି ।୮।
ଶୁଣି ଇଂରାଜ ଆକ୍ରମ ଅବଳା-ମଣ୍ଡନୀ,
ବୀରତେଜେ ହୋଇଗଲା ସବଳା ବନ୍ଦନୀ । ୯ ।
ଝାନ୍‌ସୀର ପରମବନ୍ଧୁ ପ୍ରତାପୀ ତାନ୍ତିଆ,
କବଚିତ କରି ତନୁ ଶୀଘ୍ରେ ହେଲା ଠିଆ । ୧୦ ।
ସଜାଇ ନିଜ ସେନାମା ଦେଖିଲା ହରଷେ,
ଲକ୍ଷ୍ମୀ ବାୟୀ ସାହାଯ୍ୟକୁ ଚଳିଲା ରଭସେ । ୧୧ ।
ଝାନ୍‌ସୀ ରାଜ୍ୟ ଅନ୍ତରାଳେ ପଶିଲା ସତ୍ୱରେ,
ବଜାଇଲା ବୀରବାଜା ଅତି ଉତ୍ସୁକରେ । ୧୨ ।
ଇଂରାଜ ଚମୂନାୟକ ସସୈନ୍ୟେ ଧାଇଁଲେ,
ତାନ୍ତିଆ ତପିକୁ ଯାଇ ବାଟେ ଓଗାଳିଲେ । ୧୩ ।
ଗୋଲାଘାତେ ତପିସୈନ୍ୟ କଲେ ଛିନ୍ନ ଭିନ୍ନ,
ପଳାଇଗଲା ତାନ୍ତିଆ ମନ କରି ଖିନ୍ନ । ୧୪ ।

ଚଳଇନ୍ତି ଶ୍ୱେତାଙ୍ଗ ବୀରେ ବରଷିଲେ ଗୁଳି,
ଦୃଢ଼ ପ୍ରାଚୀରରେ ସବୁ ହେଉଅଛି ଧୂଳି । ୧୫ ।
କମାଣ ନାଦରେ ଝାନ୍‌ସୀ ମହୀ ଥରହର,
ନଗରବାସୀଙ୍କ ହୃଦ ହୋଇଲା ପଥର । ୧୬ ।
ରାଣୀଙ୍କ ପକ୍ଷ 'କାଲେଖାଁ' ଅଶ୍ୱ ସୈନ୍ୟ ନେତା,
ଦୁଇଦମ୍ ଟାଣିଦେଇ ହେଲା ଦୃଢ଼ଚେତା । ୧୭ ।
ଗୁଲ୍ଥ ବକ୍‌ସି ଆଦି ଚମୂ-ନାୟକ ସକଳ,
ସୈନ୍ୟ ସାଜି ସିଂହଦ୍ୱାରେ ହୋଇଲେ ଗହଳ । ୧୮ ।
ସପତ୍ନୀକ ସହରକ୍ଷେ କହେ ଲକ୍ଷ୍ମୀ ବାଈ,
ନିଜ ବେଶ ଛାଡ଼ି ଯୁଦ୍ଧ ବେଶ ହୁଅ ଯାଇ । ୧୯ ।
ଶୁଣି ଗଙ୍ଗା ବାଈ ଯୁଦ୍ଧ ବେଶେ ହେଲା ସାଜି,
ଆଜ୍ଞା ପ୍ରମାଣେ ପ୍ରବେଶ ହେଲା ନିଜ ବାଜୀ । ୨୦ ।
ଉଲଙ୍ଗ କୃପାଣ କରେ ଅଶ୍ୱେ ବିଜେ କଲା ।
ନିଜ ବାହିନୀ ପାଶକୁ ଧୀରେ ଧୀରେ ଗଲା । ୨୧ ।
ଲକ୍ଷ୍ମୀ ବାଈ ବୀରଭୂଷା ସୁଦୃଢ଼େ ବାନ୍ଧିଲା,
ମୂର୍ତ୍ତିମନ୍ତ ବୀରଲକ୍ଷ୍ମୀ ପରାଏ ରାଜିଲା । ୨୨ ।
ଲଲାଟ ପଟରେ ଶୋଭେ ଶୁଭ୍ର ତ୍ରିପୁଣ୍ଡ୍ରକ,
ସୁବର୍ଣ୍ଣେ ରଜତ ରେଖା ପରି ଝକ ଝକ । ୨୩ ।
ରଣଶାୟୀଙ୍କର କିବା ସ୍ୱର୍ଗ ସୋପାନିକା,
ଶୈବାନୀ ଭାବ ଦେଖାଏ ସ୍ୱଚ୍ଛ କପାଳିକା । ୨୪ ।
ରଣ ସଙ୍ଗୀ ସପତ୍ନୀର ସଦୃଶ ବାଜୀରେ,
ଆରୋହି ପଶିଲା ଯାଇ ସ୍ୱସୈନ୍ୟ ରାଜିରେ । ୨୫ ।
ଟହ ଟହ ହାସ ମୁଖ ଚନ୍ଦ୍ରରେ ଶୋଭୁଛି,
ଶଶୀ କିବା ଶିତ ସ୍ରୋତ ତରଙ୍ଗେ ଭାସୁଛି । ୨୬ ।
କୃତାନ୍ତ ରସନାସମ ଅସି କରେ ଧରି,
ବୀରବେଶ ଆଡ଼ମ୍ବରେ ହୋଇଅଛି ବରି । ୨୭ ।
ବାନ୍ଧିଛି ଛୁରିକା କଟିତଟେ ଦୃଢ଼ କରି,
ପୃଷ୍ଠେ ଲମ୍ବିଛି ଫଳକ ସୂର୍ଯ୍ୟବିମ୍ବ ପରି । ୨୮ ।
କୋଷମୁକ୍ତ ଅସି ଝଲକରେ ତେଜସ୍ୱିତା,
ବଢ଼ିଛି ନିଜ-ଲାବଣ୍ୟ ଦ୍ୟୁତି ଦ୍ୱିଗୁଣିତା । ୨୯ ।

ଝନ ଝନ କରେ ସୌର କରଣେ ସୁଦଣ୍ଡ,
ସ୍ୱର୍ଣ୍ଣମଣି ଗ୍ଭଲେ କବା ହୋଇ ମନ୍ତ୍ରିମଣ୍ଡ । ୩୦ ।
ଭ୍ରମୁଛୁ କରରେ ସଦା ମହା ଅସିବର,
ଅଗଣିତ ଚଣ୍ଡ ଶୋଭାକୁ ବନ୍ଧ ନଇନ୍ଦ୍ର । ୩୧ ।
ଦେଖିଦେଲେ ବୁଜ ହୋଇଯାଏ ଚକ୍ଷୁଦ୍ୱୟ,
ପ୍ରଚଣ୍ଡୁଏ ବାମାଠାରେ ନାହିଁ ଉଦ୍ୟୋଦୟ । ୩୨ ।
ଅଶ୍ୱ ହେଷାରବେ ଶଙ୍ଖ ହୁଦ ଧକ ଧକ,
ହୁଏ ଅବରତେ ଦେହ ସ୍ୱେଦେ ଜକ ଜକ ।୩୩।
ସୌଦାମିନୀ ପର ବାଜୀ ଖେଳୁଛୁ ଆଜରେ,
ଲୁଚଯାଏ ମେଘସମ ସିପାହି ଗଜରେ । ୩୪ ।
ଚତୁର୍ଦ୍ଦିଗେ ଫୁଟୁଅଛୁ ଖିଷଣ ବନ୍ଧୁକ,
ନର୍ଭୟେ ହାଣି ମସ୍ତକ ଖେଳଇ କନ୍ଦୁକ । ୩୫ ।
ପଡେଲାମ ଫଳ ପର କାୟରୁ ମସ୍ତକ,
ଝଡ଼ ପଡ଼ ବାହାରୁଛୁ ରକ୍ତ ଭକ ଭକ । ୩୬ ।
ରକ୍ତ ଫୁହାର ବସିଲା ରଣ ଚତ୍ୱରପାଶେ,
ସାଜନ୍ତୁ କ ବୀରଲକ୍ଷ୍ମୀ ମାଜଣା ସକାଶେ । ୩୭ ।
ଦେଖୁଁ ଦେଖୁଁ ରକ୍ତମୟୀ ଅଖିଳ ଧରଣୀ,
ବାସନ୍ତୀ କଂଶୁକ ପୁଷ୍ପେ ହେଲା କ ବରଣୀ ? । ୩୮ ।
ମରଣ-ବରଣୀ-ମଉହାସ-ଆଡ଼ମ୍ବରେ,
ମୋହିତ ହୋଇ ପଡ଼ନ୍ତି ବୀରମାନେ ଖରେ । ୩୯ ।
ସ୍ଫୁଲିଙ୍ଗ ଉଦ୍‌ଗାର ନେନେ ଦେଖାଇ ସଦର୍ପେ,
ଫୁତ୍କାର ଝେଡ଼ିଉଦ୍‌ଗାର କରନ୍ତି କ ସର୍ପେ ? । ୪୦ ।
ଫଣା ଟେକ ବଷଧର ଗର୍ଜିଲା ପଗସ୍ୱେ,
କରେ କରବାଳ ଧର ଧାଇଁ ଆସୁଥାଏ । ୪୧ ।
କବଚରେ ଗୁଳ ବାଜ ଶୁଭେ ଝଣାତ୍କାର,
ଝଲକ ପଡ଼ଇ ତହୁଁ ସ୍ଫୁଲିଙ୍ଗ ଅପାର । ୪୨ ।
କ୍ଷଣ ଫଙ୍କାଶ ଗୁଳ ଆସୁଥିଲେ ଘନେ,
ପାତଇ ସ୍ମିତ ରମଣୀ ସହାସ୍ୟ ବଦନେ । ୪୩ ।
କାଳାନ୍ତ ଜ୍ୱଳନ ସମ ଭ୍ରମଇ ନୟନ,
ମୂର୍ଚ୍ଛିତ ହୋଇ ପଡ଼ିବ ଦେଖିଲେ ଶମନ । ୪୪ ।

ପୃଷ୍ଠଚଣ୍ଡ ଗଙ୍ଗା ବାଈ ଅକ୍ଷୋଭ ପ୍ରହାର,
କରଇ କଲ୍ପାଗ୍ନି ସମ ଧରି ଶସ୍ତ୍ରଧାର । ୪୫ ।
ଘୋଟକ ଖୁରଘାତରେ ଯେତେ ବିମର୍ଦ୍ଦିତ,
ଦେଖୁଁ ଦେଖୁଁ ହେଉଛନ୍ତି କୃତାନ୍ତ ଚର୍ବିତ । ୪୬ ।
ଇଂରାଜ-ସୈନ୍ୟ-ଅଟବୀ-ବସନ୍ତ-ବିହାରୀ,
ମୃଗୟା କରୁଛି ନରସିଂହ ମାରି ମାତ୍ର । ୪୭ ।
ଜବା ରକ୍ତାଂଶୁକ ପରିଧାନୀ ବନଦେବୀ,
ବୀରବେଶେ ଖେଳୁଛନ୍ତି ଅଶ୍ୱପୃଷ୍ଠ-ସେବୀ । ୪୮ ।
ସୃକ୍କଣୀ ଲେହନ କରି ସେ ରମଣୀ-ବ୍ୟାଘ୍ରୀ,
କୃପାଣ ଶୋଣିତଧାରେ ହୋଇଛି ରକ୍ତାଂଘ୍ରି । ୪୯ ।
ସମର ଶ୍ଳାଘିନୀ ବାମା ନିଃଶଙ୍କରେ ଧାଏଁ,
ନିକୃତ୍ତ-ବୀରମସ୍ତକ ଶୂଳରେ ଉଠାଏ । ୫୦ ।
ଜଳାମେଘେ ପଶେ ଯଥା ବିଜୁଳି ଝଟକ,
ସିପାହି ଗହଳେ ତଥା ସ୍ୱମାର ଛଟକ । ୫୧ ।
ମହେନ୍ଦ୍ରାଶନି-ନିଃସ୍ୱନ ଜଙ୍ଘାସ୍ତ୍ର ଆୟୁଧ,
ଘନଘନ ଆସୁଅଛି ମାର୍ଗ କରି ରୁଦ୍ଧ । ୫୨ ।
କାଲେଖାଁର ଅଶ୍ୱ, ଚମୂ ସଙ୍ଗୀନ କୋଟିରେ,
ଛିନ୍ନ ଭିନ୍ନ ହୋଇଗଲେ ଅତ୍ୟନ୍ତ ଗ୍ଲାନିରେ । ୫୩ ।
କାଲେଖାଁକୁ ଚତୁର୍ଦ୍ଦିଗେ ଘେରିଥିଲେ ଯୋଦ୍ଧା,
ଯମଦାନ୍ତୁ ଗଳି, ଗଲା ବୋଲି 'ଖୋଦା' 'ଖୋଦା' ॥
ଉଭୟ ପୃତନା ଅତିଶୟ କ୍ଳାନ୍ତ ହେଲେ,
ଦିନକର ଅସ୍ତାଚଳ ଶିରେ ପଦ ଦେଲେ । ୫୫ ।
ବିରମିଲା ରଣବାଜା ଗଲା ସେହିଦିନ,
ଲକ୍ଷ୍ମୀ ବାଈ, ଗଙ୍ଗା ବାଈ ଅସ୍ତ୍ରରେ ସଙ୍ଗିନ । ୫୬ ।
ବିଶଲ୍ୟ କରି ଦେହକୁ ଏକତ୍ରେ ବସିଲେ,
ସୈନ୍ୟାଧ୍ୟକ୍ଷ ସଙ୍ଗତରେ ମନ୍ତ୍ର ବିରଚିଲେ । ୫୭ ।
କାଲ୍ପୀଦୁର୍ଗେ ତାନ୍ତିଆ ତ ସସୈନ୍ୟେ ରହିଛି,
ଇଂରାଜ ବିପକ୍ଷେ ମହା ବିଦ୍ୱେଷ ବହିଛି । ୫୮ ।
ତାହାର ସାହାଯ୍ୟେ ଶତ୍ରୁ ଉପୁ ବିନାଶିବା,
ମର୍ହଟ୍ଟାକୁଳ-ଗୌରବ ସଦର୍ପେ ରଖିବା । ୫୯ ।

ଏହା ବୋଲି ସ୍ୱଦେଶ ପ୍ରେମ ବିକାଶେ ଚଳିଲେ,
କାଲ୍ପୀଦୁର୍ଗେ ତାନ୍ତିଆଙ୍କୁ ସାଦରେ ଭେଟିଲେ । ୭୦ ।
ତାନ୍ତିଆ ଶ୍ଳାଘାରେ ସର୍ବେ ହେଲେ ଉତ୍ତେଜିତ,
ଶତ୍ରୁର ବୈରି ତରଙ୍ଗେ କଲେ ଜର୍ଜ୍ଜରିତ । ୭୧ ।
ପରଦିନେ "ହ୍ୱିଉରୋଜ" ସୈନ୍ୟେ ହୋଇ ବୃତ,
ଝାନ୍‌ସୀଦୁର୍ଗ ନୃପପଦେ କଲେ ଅଧିକୃତ । ୭୨ ।
କାଲ୍ପୀଦୁର୍ଗେ ଲକ୍ଷ୍ମୀ ବାଈ ତାନ୍ତିଆ ସହିତ,
ରଣସଜ୍ଜା କରୁଅଛି ହୋଇ ଉତ୍ସାହିତ । ୭୩ ।
ଶୁଣି ଶ୍ୱେତ ସେନାପତି କାଲ୍ପୀ ଅଭିମୁଖେ,
ଧାଇଁଲେ ଅତି ଚପଳେ ସମରମଦ ସୁଖେ । ୭୪ ।
ତାନ୍ତିଆ ସହିତେ ରାଣୀ ଯୁଝିଲା ଅଜସ୍ରେ,
ସିଂହ ଆଗେ କି କରିବେ ହରିଣୀ ସହସ୍ରେ ? ।୭୫।
ତାନ୍ତିଆ, ରାଣୀ ତତ୍କାଳେ ହେଲେ ଲୁକ୍‌କାୟିତ,
ଇଂରାଜ ବିଜୟ ଧ୍ୱନି ହେଲା ବିସ୍ତାରିତ । ୭୬ ।



# ଭୂମିକା

ବର୍ତ୍ତମାନ ଆମ୍ଭେ "ଚିତ୍ରୋତ୍ପଳା" ନାମ୍ନୀ ଏହି ପୁସ୍ତିକାରେ ମହାନଦୀର ଚିତ୍ରାଂଶମାନ ବର୍ଣ୍ଣନାକରି ଉତ୍କଳୀୟ ସାହିତ୍ୟ-ରସିକ ମାନଙ୍କ ହସ୍ତରେ ଅର୍ପଣ କଲୁଁ । ଅନୁଗ୍ରହକରି ଥରେ ମନୋଯୋଗ ସହିତ ପଠନକଲେ ଶ୍ରମସଫଳ ବୋଧକରିବୁଁ ।

ମହାନଦୀର ନାମ "ଚିତ୍ରୋତ୍ପଳା" ଥିବାର ପ୍ରାଚୀନମାନଙ୍କ ମୁଖରୁ ଓ ପୁରାଣ ବାକ୍ୟରୁ ସ୍ପଷ୍ଟ ପ୍ରତୀତହୁଏ ଏବଂ ମହାନଦୀରେ ସ୍ନାନକାଳୀନ ନୈଷ୍ଠିକମାନେ ଏହି ବାକ୍ୟ ବୋଲି ସ୍ନାନ କରନ୍ତି ଯଥା,

"ବିନ୍ଧ୍ୟପାଦ-ସମ୍ଭୂତେ ପୂର୍ବସାଗର-ଗାମିନି !
ହର ଚିତ୍ରୋତ୍ପଳେ ପାପଂ ମଜ୍ଜୟାମି ତବାମ୍ଭସି" ।

ଏବଂ କଥିତ ଅଛି ଯେ "କଳୌ ଚିତ୍ରୋତ୍ପଳା ଗଙ୍ଗା"

ଏବଂ ତ ବ୍ରହ୍ମପୁରାଣସ୍ୟ ପୁରୁଷୋତ୍ତମ ମାହାତ୍ମ୍ୟେ—

"ନଦୀ ତତ୍ର ମହାପୁଣ୍ୟା ବିନ୍ଧ୍ୟପାଦ ବିନର୍ଗତା ।
ଚିତ୍ରୋତ୍ପଳେତି ବିଖ୍ୟାତା ସର୍ବପାପ-ହରା ଶୁଭା" ।
ଚିତ୍ରୋତ୍ପଳା ମହାନଦୀତି ରଘୁନନ୍ଦନ ବ୍ୟାଖ୍ୟା ।

ରଘୁନନ୍ଦନ ଭଟ୍ଟାଚାର୍ଯ୍ୟ କୃତ ଅଷ୍ଟାବିଂଶତି ତତ୍ତ୍ୱ ନାମକ ଧର୍ମ-ଶାସ୍ତ୍ରୀୟ ପୁରୁଷୋତ୍ତମ ତତ୍ତ୍ୱର ପୃ ୬୭ ସ୍ଥାରେ ଦ୍ରଷ୍ଟବ୍ୟ ।

ଇତ୍ୟାଦି ପ୍ରମାଣରୁ ମହାନଦୀ ଚିତ୍ରୋତ୍ପଳା ଥିବାର ସ୍ପଷ୍ଟ ପ୍ରମାଣିତ ହୁଏ । ତେବେ କଟକ ତଳ ଶାଳପୁର ହୋଇ ଯେଉଁ ଶାଖା ଯାଇଅଛି, ସେ ଆଜକାଲି ଚିତ୍ରୋତ୍ପଳା ନାମରେ ଅଭିହିତ ହେଉଅଛି । ଏ ସମ୍ବନ୍ଧେ କହିବାର ଏହି ଯେ ଚିତ୍ରୋତ୍ପଳା ନାମ ସେହି ଶାଖାରେ ଆଜି ପର୍ଯ୍ୟନ୍ତ ବିଦ୍ୟମାନ ହୋଇଅଛି, ସେହି ଶାଖାରୁ ଊର୍ଦ୍ଧ୍ୱକୁ ମହାନଦୀ ଅଭିଧାରେ ବିଖ୍ୟାତ ହୋଇଅଛି ବୋଲିବାକୁ ହେବ । ଚିତ୍ରୋତ୍ପଳା ପଦ୍ୟର ନିମ୍ନରେ କେତେକ ଗୂଢ଼ଥିବା ଅଳଙ୍କାର ମାନ ପ୍ରଦର୍ଶିତ କରାହୋଇଅଛି । ତାହା ଅଳଙ୍କାରଶ୍ରଦ୍ଧାଳୁ ଛାତ୍ରମାନେ ଅଳଙ୍କାରର ପ୍ରକାର ସରଳ ଭାବରେ ଜାଣିବେ ତନ୍ନିମିତ୍ତ ପ୍ରଦର୍ଶିତ କରାହୋଇଅଛି ।

ପ୍ରଣେତା ।

# ଚିତ୍ରୋତ୍ପଳା ।



ଜଗତ-ଜନକ ଜଳମୟୀ-ଲୋକ- ଅନୁକମ୍ପା-ସ୍ରୋତଶ୍ରେଣୀ (୧)
ଧରଣୀ ଜନନୀ- କୋଳରେ ଲୋଟୁଛି ଯନ୍ତ୍ରାର ଲହରୀ-ବେଣୀ ।
ସେହି ଏ ପ୍ରବାହ- ଧାରା ଶତ ଶତ ଭାରତେ ଖ୍ୟାତ ବାହିନୀ,
କାହିଁ କେଉଁ ନାମ ବହି ବିହରୁଛି ହୋଇ ଚିତ୍ତ ଆହ୍ଲାଦିନୀ ।
ମଧ୍ୟ ପ୍ରଦେଶର କିୟଦଂଶ ନେଇ ଉତ୍କଳର ବକ୍ଷସ୍ଥଳେ,
ପ୍ରବାହିତ ହେଉ ଅଛି ଚିତ୍ରୋତ୍ପଳା ମହାନଦୀ ନାମ ଛଳେ ।
କୁଟିଳ କୁନ୍ତଳ- ଆଡ଼ମ୍ବର ବେଶେ ଲହରୀ-ମାଳ ରଚଇ,
ଫେନପୁଞ୍ଜ ହାସ- ରସେ ତରଙ୍ଗିଣୀ, ଭ୍ରମରୀ ରଙ୍ଗେ କ୍ରୀଡ଼ଇ । (୨)
ଦାକ୍ଷିଣାତ୍ୟ ନୃତ୍ୟ- ଶିକ୍ଷା-ଗୌରବରେ ଉଦ୍ଭ୍ରାନ୍ତ ଗତି ବିହାରୀ,
ନତାନତ-ଶିଳା- ସଙ୍ଘ-ସଙ୍ଘଟନ, ଯାହାର ପାଣ୍ଡିତ୍ୟକାରୀ । (୩)
ସୁସଜ୍ଜିତ ନାନା ବୃକ୍ଷଲତା ତଟୁ ତୀରେ ଥିଲେ ଯେତେ ରହି,
ନୃତ୍ୟ ଦେଖି ଅତି- ପ୍ରଫୁଲ୍ଲ ଚିତ୍ତରେ ପୁଷ୍ପାଞ୍ଜଳି ଦେଲେ ତହିଁ ।
ଉଚ୍ଚ ଶୀର୍ଷୋପଳ- ଆଲିଙ୍ଗନେ ଜଳ ଓଢ଼ଣୀ ଶୋଭା ପ୍ରକାଶେ,
ସ୍ଥାନେ ସ୍ଥାନେ ଦେଖି ଦେଲେ ଶତ ଶତ ବଧୂ ପରାଏ ଆଭାସେ ? (୪)
ଚିତ୍ରୋତ୍ପଳା ବକ୍ଷ- ସ୍ଥଳ-ଇନ୍ଦ୍ରନୀଳ- ମଣିରୁଚିର-ଚତ୍ୱର,
ଲାବଣ୍ୟ ନୀଳିମା- ତରଙ୍ଗେ କମ୍ପିତ ହେଉଅଛି ନିରନ୍ତର । (୫)
ସୁନୀଳ ଅମ୍ବର- ସହୋଦର ଗାଢ- ସଙ୍କୁଳ ଉଭୟ ତଟ,
ବସନ ପାଇଁ କି ? ତାନ କାଢ଼ିଅଛି ତନ୍ତୁବାୟ, ନୀଳପଟ । (୬)
ଅଶିଳା ପ୍ରଦେଶେ କୁଟିଳ ସୁଗତି ଭରତ ଲେଖିଛି ଟୀଷ,
ସରଳ ବଙ୍କିମା- ପ୍ରବାହେ ମୂଳକ ହୋଇଛି ଅଳକା ମିଷ ।
କପୋଳ ସିନ୍ଦୂର ଶିଶୁଟି ସଦୃଶ କାହିଁ ତଟିନୀ ସିକତା,
ନାସା ଗୋରଚନା କଳିଟି ପରସ୍ପେ ଦର୍ଶାଇ କାହିଁ ଚହଟା ।

---

(୧) ବ୍ୟଙ୍ଗ୍ୟ ରୂପକ । (୨) ରୂପକାଲଂକାର । (୩) ନୈପୁଣ୍ୟକାରୀ ।
(୪) ଉତ୍‌ପ୍ରେକ୍ଷାଲଙ୍କାରୋପମା । (୫) ରୂପକାନୁପ୍ରାଣିତୋତ୍‌ପ୍ରେକ୍ଷା ।
(୬) ଉତ୍‌ପ୍ରେକ୍ଷା ।

କଳ କଳ ମଞ୍ଜୁ   ହ୍ରଦସ୍ଥ ବନୋଦ-   ଶବ୍ଦ-ପୂର୍ଣ୍ଣ-କର୍ଣ୍ଣପାତ,
ବିପଞ୍ଚୀ ଷଟ୍ପଦ-   ଧ୍ୱନି ନିନ୍ଦିବାକୁ   ଅଛି ସିନା ଏହି ମାତ୍ର ।
ମନ୍ଦବାତେ ବୀଚି-   ମାଳା ବିସ୍ତାରୁଛି   କମଳ (୧) ଅବୟବିମା,
କୁଞ୍ଚିତ ସୁନୀଳ-   ବସନରେ ମଣ୍ଡି   ପୁଳିନ-କାନ୍ତି-ଦାୟିମା ।
ମୌକ୍ତିକ-ମାଣିକ୍ୟ-   ମଣି-ଚୂର୍ଣ୍ଣ-ମଞ୍ଜୁ-   ବାଲୁକା-ପୂର୍ଣ୍ଣ-ଉଦର,
ଯେତେ ଦୂର ଧାଇଁ   ପାରୁଅଛି ଚକ୍ଷୁ   ନସ୍ତଡ଼େ ଶୋଭା-ଆଦର ।
ଏକ ଏକ ସ୍ଥାନେ   ପୁଳିନ ସମତା   ପ୍ରକାଣ୍ଡ ରୂପେ ରହିଛି,
ଜୀବ ସକଳର   ମନୋମୟ ଅଶ୍ୱ   ଖେଳିବା ସ୍ଥାନ ଦେଇଛି ।
ଶିଶିର କିରଣ-   କର ନିକରରେ   ଶୀତଳ ବାଲୁକାବଳୀ,
ଭ୍ରମଣଶୀଳର   ହୃଦୟ ବିଷାଦ-   କନ୍ଦଳ ଦିଅଇ ଦଳି ।
ଜଳୀୟ ଶିଶିର (୨) ସଂସକ୍ତ ଚନ୍ଦ୍ରିକା   ମନ୍ଦବାତ ସହଚରୀ, (୩)
ଜଳ ବନୋପରି   ହୃଦୟ-କାସାରେ   ସୃଜଇ ମୃଦୁ-ଲହରୀ ।
କ୍ରୋଶାଧିକ ଭୂମି   ଆଚ୍ଛାଦି ରହିଛି   ଜଳସିକ୍ତ କାୟ ଯାର,
କାହିଁ ହ୍ରଦାକାର   କାହିଁ ସର୍ପାକାର   କାହିଁ ରମ୍ୟ-କଚ୍ଛା(୪)କାର ।
ଉପଳ ମାଳାରେ   ଭୂଷିତ ହୋଇଛି   କାହିଁ ସୌମ୍ୟ-ଉରସ୍ଥଳ,
ମନେ ହୁଏ କରି   କଳଭ କୂଳରେ   ହୋଇଛି ଅତି ଗହଳ । (୫)
ଗଣ୍ଡଶୈଳ ଗଣ୍ଡ-   ଭେରୁଣ୍ଡ କି ଆସି   ରହିଛି ବକ୍ଷ ଉପରେ,
କୁଞ୍ଜର ନନ୍ଦନ   ଗିଳିବା ପାଇଁ କି ?   ଜଗିବସିଛି ସାଦରେ । (୬)
ଦ୍ୱିକୋଣ ତ୍ରିକୋଣ   ବର୍ତ୍ତୁଳ ବିବିଧ   ଉପଳେ ଉଦର ଭରି,
ନାନା ସ୍ଥାନମାନ   ଆବୃତ କରିଛି   ନାନା ରଙ୍ଗ-ଶିଖା ଧରି ।
ପାଷାଣ ନିକର   କାହିଁ ପୀଠରୂପ   କାହିଁ ପଲ୍ୟଙ୍କର ପରି,
ଦେଉଳ ପରିଏ   କାହିଁ ଦିଶୁଅଛି   କାହିଁ ମଣ୍ଡପର ସରି । (୭)
ନିଦାଘ ସନ୍ତାପ-   ପ୍ରତପ୍ତ-ହୃଦୟା-   ତଟୋପଳା ମନ୍ଦେ ବହେ,
ଜଳବେଗ କ୍ଷୀଣ-   ତନୁ-ଜରଜର   କୁଟିଳା ଛଟକ ବହେ ।
ପ୍ରଚଣ୍ଡ ମାର୍ତ୍ତଣ୍ଡ-   ମୟୂଖ ସମ୍ପାତ   ଜ୍ୱର ଉପତାପେ ଜୀର୍ଣ୍ଣ,
ଶିଳାଧାଡ଼ ଅସ୍ଥି-   ଜାଳରେ ବିଗ୍ରହ   ହୋଇଛି ଅତି ସଂକୀର୍ଣ୍ଣ ।
ତରୁବ୍ରଧ୍ନ (୮) ରାଜ   ଧମନୀ ଆବଳୀ   ଦିଶୁଛି ଶରୀର ଭେଦି, (୯)

(୧) ଜଳ । (୨) ଶୀତଳ । (୩) ମନ୍ଦବାତ ସଂସର୍ଗବତୀ । (୪) ଜଳପ୍ରାୟ ଦେଶ । (୫) ଉତ୍ପ୍ରେକ୍ଷାଲଂ । (୬) ରୂପକୋତ୍ପ୍ରେକ୍ଷାଲଂ । (୭) ମାଲୋପମାଲଂ । (୮) ବୃକ୍ଷଚେର । (୯) ରୂପକାଲଂ ।

ଜୀବନ ଚେ‌ାପାକ  ବନ୍ୟା ଆସିବାରୁ  ଜୀବନ ସଂଶୟ ହେବ ।
ତରଣୀର ଗତ  ସ୍ଥଗିତ ହୋଇଲା  ବଢ଼ିଲା ତରଣି ଗତି,
ଜୀବନ ଗ୍ରନ୍ଥନେ  ପ୍ଳବନ-ଆବଳୀ  ହୋଇଲା ମୁକ୍ତାବଳୀ, (୧)
ଚନ୍ଦ୍ରିକାରେ ବାତ୍ୟା  ଉଡ଼ାଉଛି ବାଳି  ସ୍ତୂପମାନ ସ୍ତମ୍ଭାକାର,
ଆଘାତିତ ସର୍ପ-  ପ୍ରାୟେ ଯାଉଅଛି  ତଟିନୀର ବାରି-ଧାର ।
ପ୍ରସ୍ତର ମସ୍ତକ-  ଉପରେ ଚରଣ  ଦେଇ ଚଳଇ ଯେ ଖରେ,
ଆଜ ସେହୁ ଆସି  ତା ପାଦତଳକୁ  ଧୋଉଅଛି ନିରନ୍ତରେ ।
ଜୀବନ ହରିଲେ  ତଟିନୀ ଦେହରୁ  ହିନମଣି ଶୂନ୍ୟେ ଥାଇ,
ଫାଶି ଦେଉଛନ୍ତି  ଧୀବରେ ମୀନକୁ  ବଡ଼ୀଶ ରଜ୍ଜୁ ପକାଇ । (୨)
ନବାଘ-ଶମନୀ-  ଆସାର-ଶ୍ରେଣୀରେ  ଉତ୍ପ୍ଲାବିତ ସ୍ରୋତସ୍ୱିନୀ,
ଭଙ୍ଗ-ଫେନ ନଗ  ଆକାରେ ନାଚଇ  ଯା ନୃତ୍ୟ ଶିକ୍ଷା ଶାଶ୍ୱତୀ ।
କଲ୍ଲୋଳାବଳୀରେ  ଆଲୋଡ଼ିତ ନୀର  ଗମ୍ଭୀର ନାଦରେ ପୂରି,
ଆବର୍ତ୍ତ ଘୂର୍ଣ୍ଣନ  ଘୁ ଘୁ ଧ୍ୱନି ଧାରି  ଧାଉଁଅଛି ଭୂଇଁ ଭୂରି ।
ବେଗବତୀ ମହା-  ବେଗଭରେ ଚଳେ  ଉନ୍ମୂଳି ତୀର କାନନ,
ଭଙ୍ଗୋପରି ଭଙ୍ଗ  ତା ପରେ ଉଲ୍ଲୋଳ-  ଜାଲରେ ବେଷ୍ଟିତ ବନ ।
ମହାନନାଦରେ  ମଥ୍ୟମାନ ଜଳ  ଆବର୍ତ୍ତେ ଗ୍ରହଅଇ ବନ,
ଆଲୋଡ଼ନେ ତ୍ରସ୍ତ  ହେଉଛନ୍ତି ସର୍ବେ  ମତ୍ସ୍ୟ କୂର୍ମ ନକ୍ର ଚକ୍ର ।
ହୋଇ ଅସ୍ତବ୍ୟସ୍ତ  ଅତ୍ୟନ୍ତ ଦୁର୍ବଳ  କେତେ କେତେ ଜୀବକୁଳ,
ଭାସମାନ କାଷ୍ଠ-  କାଷ୍ଠୀପରେ ବସି  ଯୋଗରେ ଲଭିଲେ କୂଳ ।
ମୀରଜାଲ ମାଡ଼-  ଚଡ଼ବାରୁ ଆସି  ଲଭିଲା ସୈକତ ଛଟା,
ସେକାଳ କାକଳୀ  ଝଣ-ଫଟ୍ଟପାଟି  ଏବେ ହୋଇଛି କୂଳଟା ।(୩)
ଧାବିତ ହେଉଛି  ପ୍ରଖରେ ପ୍ରବାହ  ଝାଉ-ଝିଲୀଙ୍ଗିର ମାଙ୍କ,
ଧରଣୀପୃଷ୍ଠ ହୋଇ  ଚଢ଼ ଯାଉଛନ୍ତି  ତରୁ ଗୁଳ୍ମ ଧାଡ଼ ଧାଡ଼ ।(୪)
ମୁକ୍ତାନ୍ତମଳୁଜେ !  (୫) ରଷିପୁତ୍ରୀ ହୋଇ  ଜଗାଳେ ତୋର କି ଥିଲା,
ଦୁଷ୍ଟ ଅଙ୍ଗ ଘନ-  କାଳ ଉଦସ୍ୱରେ  ବୀଚସ୍ରୁ ବନ୍ଧ ବନ୍ଧିଲ ।

(୧) ଶ୍ଳେଷୋଦ୍ଧାରଣ (ତରଣି ପଦରେ ସୂର୍ଯ୍ୟ, ନୌକା ଅର୍ଥ କଲେ ବସ୍ତୋଦ୍ଧ ପଦ୍ମହାର ହେବ, ତଦ୍ରୂପ ଜୀବନ ପଦରେ ଜଳ, ପ୍ରାଣ । (୨) ଶ୍ଳେଷମୂଳା ଅସଙ୍ଗତ୍ୟଳଂ । (୩) ତଟୀଦଶକ୍ରା । (୪) ଅସଙ୍ଗତ ଅଳଂକାର । (୫) ମୁକାନ୍ତ ଋଷିଙ୍କର ଦୁହିତା ମହାନଦୀ ଥିବାର କିଂବଦନ୍ତୀ ଅଛି ।

ଭାସମାନ ଶବ- ସଙ୍କୁଳ ପ୍ରବାହ- ଆକ୍ରାନ୍ତ ତୋହର ତୀର
ଫେନିଳ ଆବିଳ- କଷାୟିତ ଗାତ୍ର, ଅସ୍ୱାଦୁ ଅପେୟ ନୀର ।
ସଦ୍ୟ ସଙ୍କାଟ ବ୍ରଣପୂର୍ଣ୍ଣ-ଗାତ୍ର ଅତି ପୂତି ଯୁକ୍ତ ଶବ,
ତା ପରେ ଆରୋହି ଗୃଧ୍ର କଙ୍କ ବୃନ୍ଦ ଆନନ୍ଦେ କରନ୍ତି ରବ ।
ଚଞ୍ଚୁରେ ଚଞ୍ଚଳେ ଲୋଚି ଲୋଚି କୃମି ଝାଡ଼ି ମାଂସ ଖାଉଥାନ୍ତି,
ଅତି ଉତ୍ସବରେ ପୂୟ ପାନ କରି ଊର୍ଦ୍ଧ୍ୱ ଚଞ୍ଚୁ କରୁଥାନ୍ତି । (୧)
ମୃତ୍ତିକା ଚର୍ଚ୍ଚିତ- କରିବର ପ୍ରାୟେ ଭାସୁଛନ୍ତି ଫେନାବଳୀ,
ନୃଶଂସ ଉରଗ ଉଦରେ ପୂରାଇ ଆସୁଛନ୍ତି ଟଳ ଟଳ ।
ଆବର୍ତ୍ତ ଭ୍ରମଣ- ସଫେନ ଭୀମୋର୍ମି- ପ୍ରବାହ ଗର୍ବରେ ମାତି,
ଉତ୍ତରଙ୍ଗ ହୋଇ ଉଲଟି ପଡ଼ୁଛି ଉଲସି ଉଠଇ ଛାତି ।
ଈଶ୍ୱର ପ୍ରଦତ୍ତ ଅବିଶ୍ରାନ୍ତ ସୁଖ- ସମ୍ଭୋଗ ହୋଇ ଅବଶ, (୨)
ଲହରୀ ଦୋଳରେ ବସି ଖେଳୁଅଛି ସ୍ୱପ୍ରେମୀ ମାନସ-ହଂସ ।
ଚମ୍ପୋପୂଲା ଜନ୍ମ ରାସ୍ତୁପୁର ଜଳ ସାହବା ଗ୍ରାମ ପାଶରୁ,
ମନୋହର ଧାର ବାହିତ ହେଉଛି ଦିଶୁଅଛି ଅତି ସରୁ ।
ପବିତ୍ର-ହୃଦୟା ପୁଣ୍ୟାଶ୍ରମ ଦେଖି ଚଳୁଥାଇ ଧୀରେ ଧୀରେ,
ରାଜୀବ ନଗର ନିକଟରେ ଯାଇ ମିଳନ୍ତି ସ୍ୱଚ୍ଛ ମତିରେ ।
ରାଜୀବ-ଲୋଚନ ପ୍ରଭୁ ବିରାଜିତ ସୁନ୍ଦର ବୈଷ୍ଣବୀ ଛବି,
ଚରଣ ପଖାଳି କୃତାର୍ଥ କରୁଛି ନଗ ନଗର ଅଟବୀ ।
ଶୌରିନାରାୟଣ- ବିଷ୍ଣୁ ପ୍ରତିମୂର୍ତ୍ତି ବାମ ତଟେ ପ୍ରତିଷ୍ଠିତ,
ତାହାଙ୍କ ନାମରେ ସୁବିଖ୍ୟାତ ହୋଇ ନଗର ଅତି ଶୋଭିତ ।
ବୈଷ୍ଣବୀ-ପ୍ରତିମା- ଶ୍ରୀଅଙ୍ଗ ଧଉତେ ପବିତ୍ର ପ୍ରବାହ ରାଜି,
ଯାହାର ମାହାତ୍ମ୍ୟ (୩) ଜନେ ସ୍ନାନଶୀଳ-ପାପ ହୋଇଯାଏ ମାଜି ।
ଗୋଧୂମ ତଣ୍ଡୁଳ ନାବ ନାବ କରି ଚମ୍ପୋପୂଲା ସେ ନଗରୁ,
ଆଣି ଯୋଗାଉଛି ସହର ମାନଙ୍କୁ ଦୁଃଖ ହରୁଛି ଦେଶରୁ ।
ପ୍ରସାଦ ଲାଳସେ ଶିବନଦୀ ଆସି ମିଳିଅଛି ଏହିଠାରେ,
ନିଜ ତରଙ୍ଗକୁ ମିଳାଉଛି ନେଇ ଅତ୍ୟନ୍ତ ସୁହୃଦାକାରେ ।
ଚନ୍ଦ୍ରପୁରେ ଚନ୍ଦ୍ରା- ସମା, ପଦ୍ମପୁରେ- ପଦ୍ମାସମା ଦେବୀଙ୍କର,
ଚରଣ-ପଙ୍କଜ- ମଧୁ ନିଃସ୍ୟନ୍ଦରେ ପବିତ୍ର ନଦୀ ଉଦର ।

(୧) ବୀଭତ୍ସରସ ସମନ୍ୱିତ ସ୍ୱଭାବୋକ୍ତ୍ୟଲଂ । (୨) ଅନାସ୍ୱୃତ (୩) ଶୌରିନାରାୟଣ ମେଳା ।

ମାତୃସ୍ନେହ ପରି- ପ୍ଲୁତା ଇବ ନଦୀ ଲହରୀ-କର ପ୍ରସାରି,
ଆଲିଙ୍ଗନ ସୁଖେ ଜନନୀ କୋଳରେ ରହିଲା ନୋହିଲା ବାରି ।
ଜନନୀବତ୍ସଳା- ଇବ ସନୋଦ୍ଧମା ବଢବା ଗ୍ରାମ ବସନ୍ତ,
ଊର୍ଦ୍ଧ୍ୱ ନଦୀର ସ୍ୱାଦୁ ଜଳପାନେ ହୁଅଇ ଆମୋଦବନ୍ତ ।
ଚିତ୍ରୋତ୍ପଳା ଅସ୍ଥି କଙ୍କାଳ ସ୍ୱରୂପେ ରହିଅଛି ହୀରା-କୂଡ,
ବିଷମ ପ୍ରସ୍ତରେ ଗଠିତ ହୋଇଛି ନାବିକଙ୍କ ନାଶି ମୂଢ ।
ପ୍ରପାତ ଉତ୍ପ୍ଲାବ ଭୀଷଣ-କଲ୍ଲୋଳ ଦେଖି ଚିତ୍ତ ଯାଏ ଥରି,
ଗୁଗଲ ମନାସି ତରଣୀ ଆଣନ୍ତି ଧୀରେ ଧୀରେ ଧରି ଧରି ।
ଦ୍ୟୁମଣି-ଉତ୍ତମ- ହୀରା ଜାତହୁଏ କୈବର୍ତ୍ତ ବୁଦ୍ଧି କୌଶଳେ,
ସମଲଇପୁର- ମଣ୍ଡନ-ଭୂପତି- କପୋଳ ଉପରେ ଝଳେ ।
ନିର୍ମଳ ଶୀତଳ ପ୍ରବାହ ସ୍ପର୍ଦ୍ଧିନୀ ସୁପୂଜିତ ରକ୍ତ କାୟା,
ସମ୍ବଲ ପୁରର ଅଧିଷ୍ଠାତ୍ରୀ ଦେବୀ ସମଲାଇ ମହାମାୟା ।
ଦେବୀ ଅଭିଧାରେ ଖ୍ୟାତ ହୋଇଅଛି ସମ୍ବଲପୁର ସହର,
ଧନୁ ଆକାରରେ ଗବ୍ୟୂତି (୧) ପ୍ରମାଣେ ନଗର ଅତି ସୁନ୍ଦର ।
ସଉଧ ମାଳାରେ ମଣ୍ଡିତ ହୋଇଛି ରୁଚିର-ତୀର-ସରଣୀ,
ମହା ଉତ୍ସବରେ ଧବଳ ତୋରଣେ ହୋଇ ଅଛି କି ବରଣୀ ?(୨)
ନିଜ ରୂପ ଚିହ୍ନ ନିତ୍ୟ ଯା ଦେଖୁଛି ନଗର ହ୍ରଦ-ଦର୍ପଣେ,
ସ୍ୱକାୟ ମୂରତି ଦ୍ୱିଗୁଣିତ କରି ଦେଖାଏ ସୁନ୍ଦରପଣେ ।
ସଉଧାବଳୀର ରମଣୀୟକତା ସ୍ତରେ ସ୍ତରେ କରେ ଖେଳା,
ଅର୍ଦ୍ଧାଙ୍ଗ ଭୂଷିତ ହେମପରି ଦିଶେ ତଟିନୀର ସବ୍ୟବେଳା ।
ସ୍ୱାମୀସ୍ୱ ଶାସନ- କରତାଙ୍କ † ଯତ୍ନେ ନଗର-ରକ୍ଷଣୀ-ସଭା, (୩)
ଭିକ୍ଟୋରିଆ ଘାଟ ନାମ ଦେଇଛନ୍ତି ସୋପାନେ କରି ସୁପ୍ରଭା ।
ବୈଦ୍ୟନାଥ ମିଶ୍ର ଆଦି ଧନୀଗଣ କଲେ ଏହାର ସାହାଯ୍ୟ,
ସୁଧାମୟୀ (୪) କୀର୍ତ୍ତି ରଖିବାର ସିନା ଧନାଧିକାରୀର କାର୍ଯ୍ୟ (୫)
ରାଜଘାଟ ରାଜ- ବଂଶିଙ୍କ ଶ୍ରୀଅଙ୍ଗ- ମାର୍ଜନା ପାଇଁ ରଚିତ,
ଚୌହାଣ ତିଳକ- ଭୂପତି ନିକର ଯହିଁରେ ସଦା କ୍ଷାଳିତ ।

(୧) ଦ୍ୱିକ୍ରୋଶ ପରିମିତ ଭୂମିକୁ ଗବ୍ୟୂତି ବୋଲଯାଏ । (୨) ପୂଜନୀୟା ।
† J. P. Goodridge (୩) ମ୍ୟୁନିସିପାଲିଟି । (୪) ଚୂର୍ଣ୍ଣମୟୀ ।
(୫) ଲୋକୋକ୍ତ୍ୟଲଂ ।

ଅଧୁନା ସେ ଘାଟ ଶ୍ମଶାନ ହୋଇଛି ସେ ଜଳ ଏବେ ଗରଳ, (୧)
ଈଶ୍ୱର ଘଟନା କେ ଆନ କରିବ ସାଗର ହୋଇଛି ସ୍ଥଳ ।
ସ୍ୱର୍ଣ୍ଣ କଳଶରେ ଶୋଭମାନ ବ୍ରହ୍ମ- ପୁରୀ ମନ୍ଦିର ବନ୍ଦିତ,
ଦାରୁ ବ୍ରହ୍ମ ରୂପ ଅରବିନ୍ଦ-ନେତ୍ର ଚକ୍ରୀ ସଦା ବିରାଜିତ ।
ମନ୍ଦିର ଦୁଆରୁ ନଦୀ ଗର୍ଭଯାଏ ଚୂନ ପାବଚ୍ଛ ଗଠିତ,
ଚନ୍ଦ୍ରୋଜ୍ଜ୍ୱଳା ନୀର- ତରଙ୍ଗ-କରରେ ପରିଷ୍କୃତ ସୁରଞ୍ଜିତ ।
ଉଷା କାଳେ ସ୍ନାନ- ଶୀଳା ନାରୀ ବୃନ୍ଦେ ତୀର ହୋଇଯାଏ ଘନ,
ଅମଳ ତରଙ୍ଗେ ଦଳ ହେଉଥାଏ ରମଣୀ-ଲାବଣ୍ୟ-ବନ ।
ମୁଗ୍‌ଧା ମଧ୍ୟା ବୃଦ୍ଧା ପ୍ରଭୃତି ଲଳନା ଶ୍ରେଣୀ ଶ୍ରେଣୀ ମାଳ ମାଳ,
ଘଟାଙ୍କିତ ଶିର- କଟି-ହସ୍ତ ହୋଇ (୨) ଯାଉଛନ୍ତି ବାମା ଜାଳ ।
ଉଦନ୍‌ବତ୍ତି-ହ୍ରଦ ଦର୍ପଣେ ଦିଶନ୍ତି ଶତ ଶତ ନାରୀ କୁଳ,
କବି ଭାବୁଥାଇ ଯେଉଁ ଉପମାକୁ ହ୍ରଦ ଭିତରେ ସେ ଠୁଳ ।
ଚନ୍ଦ୍ର ପଦ୍ମକଳୀ ଖଞ୍ଜନ ପାଟଳୀ ପଳାଶ-କୁସୁମ ଦଳ,
ରମଣୀ-ଉପମା, ଉପମେୟ ଶିରୀ ଦିଶୁଥାଇ ଜଳସ୍ଥଳ ।
ଅପଘନ ଲିପ୍ତ ହରିଦ୍ରା-ଧୌତିରେ କର୍ବୁରିତ (୩) ନୀରଜାଳ,
ପ୍ଳବନ ମଜ୍ଜନେ ବାଉଳୁଏ ନାରୀ ତରୁଣୀ, ତରଙ୍ଗ ମାଳ ।
ଜଳେ ଅପଘନ ମଜ୍ଜାଇ ରହନ୍ତି ଦିଶୁଥାଇ ମାତ୍ର ମୁଖ,
ତା ଦେଖି ମଧୁପ ପଙ୍କଜ ଲୋଭରେ ବେଢ଼ନ୍ତି ନୋହି ବିମୁଖ ।
କେଶକୁ ଶୈବାଳ ମନେକରି ମୀନା- ବଳୀ ଧାଆନ୍ତି ସତ୍ୱରେ,
ବରଟା ସହିତ (୪) ମରାଳ ଆସଇ ବାହୁ-ମୃଣାଳ ଧ୍ୟାନରେ ।(୫)
ତଟ ବାଟିକାରୁ ଉପହାର ପୁଷ୍ପ ତରଙ୍ଗ-କରରେ ଧରି,
ଭୁରୁମ୍ଭ ସମୀପେ ଅଙ୍ଗନଦୀ ଆସି ଭେଟିଲା ସେବକ୍ଷା ଚରି ।
ଦକ୍ଷିଣ କୂଳରେ ରହିଅଛି ସ୍ୱର୍ଣ୍ଣ- ପୁର ସୁନ୍ଦର ନଗର,
ନାଦେୟ ପାନୀୟ ବିହାର ଆସ୍ୱାଦେ ପ୍ରମୋଦିତ ସର୍ବ ନର ।
ପୁର ଅନ୍ତେ ସ୍ୱଚ୍ଛ- ନୀର ତେଲନଦୀ ସପତ୍ନୀ ଭାବରେ ମିଶେ,
ବୈପରୀତ୍ୟରେ ଦେହ ଫୁଲାଇ ରହିଛି ନଚଳିଲା ପରି ଦିଶେ ।

(୧) ଅଶୁଚି ହେତୁ ଗରଳବତ୍‌ ଅବ୍ୟବହାର୍ଯ୍ୟ ।
(୨) ଜଣେ ଜଣେ ସ୍ତ୍ରୀ ଦୁଇମାଠିଆ ଲେଖାଏଁ ଜଳ ଆଣନ୍ତି ।
(୩) ହରିଦ୍ରାବର୍ଣ୍ଣ । (୪) ହଂସୀ । (୫) ଭ୍ରାନ୍ତିମଦଳଂ ।

